# ଯଯାତି



କବି : ଶ୍ରୀଯୁକ୍ତ ବ୍ୟୋମବିହାରୀ ରଥ

# ଯଯାତି

କାବ୍ୟ

ବ୍ୟୋମ ବିହାରୀ ରଥ
ଗ୍ରାମ-ଇତୁକୁରା, ପୋ-ପୋଡ଼ାମରାଇ
ଭାୟା-ମାହାଙ୍ଗା, ଜି-କଟକ

ପ୍ରକାଶକ : **ମନୋଜ କୁମାର ନନ୍ଦ**
ସା-ଗୋବିନ୍ଦପୁର, ପୋ : ସାହାନିଆଜପୁର
ଭା-ନିଶ୍ଚିନ୍ତକୋଇଲି, ଜି-କଟକ

ପ୍ରଥମ ପ୍ରକାଶନ : ମାର୍ଚ୍ଚ ୨୦୦୫ (ଦୋଳ ପୂର୍ଣ୍ଣିମା)

ପ୍ରଚ୍ଛଦପଟ : ଶୁନ୍‌ସେଫ୍ ରଥ

ମୁଦ୍ରକ : **ଶ୍ରୀ ଗଣେଶ ଗ୍ରାଫିକ୍ସ, ରାଉରକେଲା**

ମୂଲ୍ୟ : ୬୦ ଟଙ୍କା ମାତ୍ର

# JAJATI

Kabya

***Byoma Bihari Rath***
Itukura, P.O-Podamarai
Via-Mahanga, Dist-Cuttack

*Publisher* : **Manoj Kumar Nanda.**
At-Gobindapur, P.O-Sahaniyajpur
Via-Nischintakoili, Dist-Cuttack

*1st Edition* : ***March 2005 (Dola Purnima)***

*Cover Design* : **Soonseph Rath**

*Printers* : **Shree Ganesh Graphics, Rourkela**

*Rupees* : ***Sixty Only***

# ଉତ୍ସର୍ଗ

ଏହି କାବ୍ୟ ରଚନା ସମୟରେ ମୁଁ ସରକାରୀ ଉଚ୍ଚ ବିଦ୍ୟାଳୟ, ଅନକାଡ଼େଲିରେ ଥାଏ । ଡୁଡୁମା ଜଳପ୍ରପାତଠାରୁ ତିନି କିଲୋମିଟର ଦୂରରେ ଅନକାଡ଼େଲି । ପ୍ରୋଜେକ୍ଟ ଯୋଗାଇଥିବା କ୍ୱାର୍ଟରରେ ସପରିବାର ରହୁଥାଏ । ସେ ସ୍ଥାନର ପ୍ରାକୃତିକ ଦୃଶ୍ୟ ଏତେ ହୃଦୟସ୍ପର୍ଶୀ ଜଣେ ସ୍ୱଚକ୍ଷୁରେ ନ ଦେଖିଲେ ଜାଣି ପାରିବେନି । ହଜାର ହଜାର ପାହାଡ଼ ପର୍ବତ-ଝରଣା ବୃକ୍ଷରାଜି ମୟୂର ଆଦି ପକ୍ଷୀ ଚନ୍ଦ୍ରୋଦୟ, ସୂର୍ଯ୍ୟାସ୍ତ, ଏ ସବୁର ଦୃଶ୍ୟ କହିବାକୁ ଗଲେ 'ବଚନ ବିଷୟ ନୁହଁ, ସେ ଛବି ହୃଦ, ସେ କେବଳ ପାରେ ଅନୁଭବି ।"

ଏପରି କ୍ଷେତ୍ରରେ କାବ୍ୟ-କବିତା ଲେଖିବା ପାଇଁ ପ୍ରାକୃତିକ ପ୍ରେରଣାର ପ୍ରାଚୂର୍ଯ୍ୟ ପୁରି ରହିଛି । ପ୍ରାକୃତିକ ପ୍ରେରଣା ସାଙ୍ଗକୁ ମୋ ଜୀବନର ସାଥୀ ଆନୁସଙ୍ଗିକ ପ୍ରେରଣା ତଥା ଉତ୍ସାହ ଯୋଗାଇବାରେ ସାହାଯ୍ୟ କରିଛନ୍ତି । ସମୟୋପଯୋଗୀ ତାଙ୍କର ସେବା ମୋର ସ୍ଫୁର୍ତ୍ତି ବଢାଇବା ସଙ୍ଗେ ସଙ୍ଗେ ଆଗକୁ ଆଗକୁ ଚିନ୍ତା କରି ଆଗେଇ ଯିବାରେ ଉତ୍ସାହ ବଢାଇଥାଏ ।

ତେଣୁ ସେଇ ମମତାମୟୀ-ସେବାର ପ୍ରତିମୂର୍ତ୍ତି ପ୍ରିୟତମା ଶଶିରେଖାଙ୍କର କରକମଳରେ ଏହି "ଯଯାତି" କାବ୍ୟ ଉତ୍ସର୍ଗ କରି ମୁଁ ଋଣ ମୁକ୍ତ ହେବାକୁ ଚାହୁଁଛି ।

**ବ୍ୟୋମ ବିହାରୀ ରଥ**



# ଉପକ୍ରମଣିକା

କାବ୍ୟ ରଚନା ଏକ ମହତ କର୍ମ । ସମାଜରେ ପ୍ରଜ୍ଞାବିତ୍‌ମାନେ ଏହି କର୍ମକୁ ଆଦରି ନେଇଥା'ନ୍ତି । ମାତୃଭୂମି ମାତୃଭାଷା ଓ ମନୁଷ୍ୟକୁ ଭଲପାଇବା ପ୍ରବୃତ୍ତିରେ ହିଁ ଶୁଦ୍ଧପୂତଃ ଭାବ ସୃଷ୍ଟି ହୁଏ । ସ୍ରଷ୍ଟା ସେଇଭାବକୁ ସାହିତ୍ୟର ସର୍ବଶ୍ରେଷ୍ଠ ବିଭାଗ କବ୍ୟ-କବିତାରେ ପ୍ରକାଶ କରନ୍ତି । ଏଇ କ୍ରମରେ କବି ଶ୍ରୀ ବ୍ୟୋମ ବିହାରୀ ରଥ ସ୍ୱକୀୟ ଭାବବ୍ୟଞ୍ଜନାକୁ 'ଯଯାତି' କାବ୍ୟରେ ଆମକୁ ଶୁଣାଇଛନ୍ତି । 'ଯଯାତି' ଏକ ପୌରାଣିକ ବିଷୟ ଅଟେ । କବି ଶ୍ରୀ ରଥ ମହାଶୟ 'ଯଯାତି' ଉପନ୍ୟାସ ପାଠକରି ଏ କାବ୍ୟ ରଚନାରେ ବ୍ରତୀ ହୋଇଛନ୍ତି ବୋଲି ପୂର୍ବରୁ ସୂଚେଇ ଦେଇଛନ୍ତି । କବିଙ୍କର ସାହିତ୍ୟପ୍ରତି ଶ୍ରଦ୍ଧା ଓ ସମ୍ମାନ ସତତ ଅଭିନନ୍ଦନୀୟ । ପ୍ରାଚ୍ୟ ବାଙ୍‌ମୟ ପରମ୍ପରାରେ ଏ ପ୍ରକାର ଅନେକ ଦୃଷ୍ଟାନ୍ତ ବିଦ୍ୟମାନ ।

ମୁଁ 'ଯଯାତି' କାବ୍ୟର ପାଣ୍ଡୁଲିପି ପାଠକରି କାବ୍ୟିକ ଉଲ୍ଲାସ ପାଇଛି, ଯାହା ସୁଧୀ ସମାଜରେ ଗ୍ରହଣୀୟ । ପ୍ରାଚୀନ ଶୈଳୀ, ସରଳ ଲଳିତ ଭାଷାର କୋଟିକମ ପୁନଷ୍ଟ ରାଗ-ରାଗିଣୀର ସମାହାରରେ 'ଯଯାତି' ଏକ ନିର୍ମଳ ମାନସମୂର୍ତ୍ତି ରୂପେ ପ୍ରତୀୟମାନ । ପାଞ୍ଚସର୍ଗ ବିଶିଷ୍ଟ ଏ କାବ୍ୟରେ ଚରିତ୍ରମାନଙ୍କର ଜୀବନଚର୍ଯ୍ୟା, ବାକ୍‌ଭଙ୍ଗୀ ରୂପ ଲାବଣ୍ୟ ଓ ସ୍ୱପ୍ନସୁରଭି ପ୍ରସଙ୍ଗକ୍ରମେ ସୁଶୋଭିତ ଓ ସୁରଭିତ । ଧ୍ୱନିସର୍ବସ୍ୱ ଉପମା ଉପମେୟ ଶବ୍ଦ ବସାଣ ସର୍ବୋପରି କବିଙ୍କର ବିବେଚନା କାବ୍ୟକୁ ରସୋତ୍ତୀର୍ଣ୍ଣ କରିଛି ।

କାବ୍ୟରେ ମୁଖ୍ୟଚରିତ୍ର ଯଯାତି ହେଲେ ହେଁ ନହୁଷ, ପୁରୁ, ଦେବଯାନୀ ଓ ଶର୍ମିଷ୍ଠାଙ୍କର ମନୋଭାବ-ମନଭୋକ ଏବଂ ଦେହଭୋକର ଆବେଦନ ଅତିସଂଭ୍ରମ ଭାବେ ରୂପାୟିତ । ଏହି ମର୍ମରେ ସ୍ୱଭାବକବି ଗଙ୍ଗାଧର ମେହେର, ପଲ୍ଲୀକବି ନନ୍ଦକିଶୋର ଓ ବରେଣ୍ୟ କବି ମାୟାଧର ମାନସିଂହଙ୍କୁ ସ୍ମରଣ କରାଇ ଦିଏ ।

ଯଯାତି କାବ୍ୟକୁ କବିଶ୍ରୀ ବ୍ୟୋମବିହାରୀ ରଥ ଏଭଳି ଭାବେ ନିର୍ମାଣିଛନ୍ତି ଯେ ତାହା ମହାକବି ମାଘଙ୍କର ଉକ୍ତି "କ୍ଷଣେ କ୍ଷଣେ ଯନ୍ନବତା ମୁପୈତି ତଦେବରୂପଂ ରମଣୀୟତାୟ୍ଃ।" ତୁଲ୍ୟ ବିବେଚିତ ।

ପୁରାଣ ଯୁଗର ରୀତିନୀତି ରାଜକୀୟ ଆଡ଼ମ୍ବର ଋତୁମାନଙ୍କର ବିଭାସ କାବ୍ୟର ଛତ୍ରେ ଛତ୍ରେ ବିଳସିତ ହୋଇଛି । ସର୍ଗଗୁଡ଼ିକ ଅତିଦୀର୍ଘ ହୋଇଥିଲେ ହେଁ ବିଷୟବସ୍ତୁର ଅବତାରଣା ଚରିତ୍ରମାନଙ୍କର ସଂଳାପ ମାଧୁରୀରେ ପାଠକୀୟ ଆଗ୍ରହ ଅତୁଟ ରହେ । ସଂପ୍ରତି ଉତ୍ତର ଆଧୁନିକତାର ଗୁଞ୍ଜରଣ ଆମ ଭାଷା ଉପବନରେ ଧୀରେ ଧୀରେ ଗୁଞ୍ଜରିତ ହେଲାଣି, ତଥାପି କାବ୍ୟରଚନା ଓ କାବ୍ୟପାଠର ଲୋକପ୍ରିୟତା ରହିଛି । ଅନେକ ସମାଲୋଚକ କାବ୍ୟର ଶୈଳୀଶିଳ୍ପକୁ ନେଇ କବିକର୍ମକୁ ପ୍ରଶଂସା କରନ୍ତି, ତାହା ଏକ ପଲ୍ଲବଗ୍ରାହୀ ଆଲୋଚନା ଅଟେ ।

କାବ୍ୟରେ ରସହିଁ ମୁଖ୍ୟ ଅଟେ । ସାହିତ୍ୟ ଦର୍ପଣରେ କବିରାଜ ବିଶ୍ୱନାଥ ପ୍ରାଞ୍ଜଳ ଭାବେ ଉଲ୍ଲେଖ କରିଛନ୍ତି । ସବୁ ଭାଷା ସାହିତ୍ୟରେ ଏହା ହିଁ ମର୍ମବାଣୀ । ଯଯାତି କାବ୍ୟରେ ଆଦି, କରୁଣ ବୀର, ଭୟାନକ ଓ ଶାନ୍ତରସର ମଞ୍ଜୁଳ ଅବତାରଣା ଚମତ୍କାରକ୍ରମେ ହୃଦୟକୁ ରଞ୍ଜନ କରେ । କବି ବ୍ୟୋମବିହାରୀଙ୍କ ଭାବଜଗତରେ ନୈସର୍ଗିକ ସୁଷମାରାଶି ତଥା ରୂପଲାବଣ୍ୟର ମୁଗ୍ଧମଧୁର ବର୍ଣ୍ଣନା ନାନ୍ଦନିକ କଳାରେ ପାଠକ ମନକୁ ବାନ୍ଧି ରଖେ । ରସଗ୍ରାହୀ ମାନସ କୋଷେରେ କେତେକ ପଦ ପ୍ରାଣବନ୍ତ ହୋଇଯାଏ । ଏଇ ନ୍ୟାୟରେ କବି କର୍ମ ସାର୍ଥକ ହୁଏ । ମମ୍ମଟଙ୍କ ଭାଷାରେ କବିଙ୍କର ଯଶ ଯୁଗଯୁଗକୁ ରହେ ।

ମାନସିକ ପ୍ରଶାନ୍ତି ଏବଂ ଭାବବିନୋଦନ ନିମନ୍ତେ କେହି କେହି କାବ୍ୟ କବିତା ପାଠ କରନ୍ତି । ଏତଦ୍ ବ୍ୟତୀତ କାବ୍ୟ ପାଠଦ୍ୱାରା ନ୍ୟାୟ, ଆଗମ, ଜୀବନ ଦର୍ଶନ ଏବଂ ମନୁଷ୍ୟର ତୁରୀୟଚେତନା ବହୁବାଗରେ ପ୍ରକଟିତ ହୁଏ । ଯଯାତି କାବ୍ୟରେ ମଧ୍ୟ ଏତାଦୃଶ ତଥ୍ୟ ଆମକୁ ବିସ୍ମିତ କରେ । କବି ବ୍ୟୋମ ବିହାରୀ ରଥଙ୍କର ନିର୍ମଳ କବିତ୍ୱରେ ଆମ ସାହିତ୍ୟ ଶ୍ରୀ ସମ୍ପୂର୍ଣ୍ଣ । ମୁଁ ଆଶାକରେ, ବର୍ତ୍ତମାନ ସମାଜରେ ଘଟୁଥିବା କେତେଗୋଟି ଘଟଣାକୁ ଉପଜୀବ୍ୟ କରି ବ୍ୟୋମବିହାରୀବାବୁ କାବ୍ୟରଚନା କଲେ, ତାହା ବେଶହୃଦ୍ୟ ହେବ । 'ଯଯାତି' କାବ୍ୟ ବିବେକୀ ଗ୍ରାହକମାନଙ୍କୁ ମୁଗ୍ଧ କରିବ ଏ ସଂପର୍କରେ ମୁଁ ନିଶ୍ଚିତ ଅଟେ ।

ତା ୨୬/୧୧/୨୦୦୪
ରାସପୂର୍ଣ୍ଣିମା

**କବିବର ପରିଡ଼ା**
ପୋଷ୍ଟ-ବନ୍ଧକଟା
ଥାନା-ପାଟକୁରା, ଜି-କେନ୍ଦ୍ରାପଡ଼ା



## ପ୍ରକାଶକଙ୍କ କଲମରୁ ....

କବି ଶ୍ରୀଯୁକ୍ତ ବ୍ୟୋମ ବିହାରୀ ରଥ ୧୯୪୩ ମସିହାରେ କଟକ ଜିଲ୍ଲା ମାହାଙ୍ଗା ଥାନା ଅନ୍ତର୍ଗତ ଇଡୁକୁରା ଗ୍ରାମରେ ଜନ୍ମ ଗ୍ରହଣ କରନ୍ତି । କାଳକ୍ରମେ ଶିକ୍ଷକତା ବୃତ୍ତିକୁ ଆଦରି ନେଇ ବିଭିନ୍ନ ସରକାରୀ ଉଚ୍ଚ ବିଦ୍ୟାଳୟରେ ଶିକ୍ଷାଦାନ କରି, ସ୍ୱନାମଧନ୍ୟ ଶିକ୍ଷକ ରୂପେ ସେ ଚିର ପରିଚିତ । ଶ୍ରୀ ରଥ ଶଙ୍ଖତ୍ରାସ ସରକାରୀ ଉଚ୍ଚ ବିଦ୍ୟାଳୟରେ ଅବସର ଗ୍ରହଣ କରି ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ଲେଖନୀ ସିଦ୍ଧ ହସ୍ତରେ ଚଳାଇ ଆସୁଛନ୍ତି ।

ଶ୍ରୀଯୁକ୍ତ ରଥ ଏକାଧାରରେ ଜଣେ ଲେଖକ, କବି, କଳାକାର ଓ ନାଟ୍ୟକାର ରୂପେ ସୁପରିଚିତ । ତାଙ୍କର ରଚିତ ଗୀତିନାଟ୍ୟ ଗୁଡ଼ିକ ଆକାଶବାଣୀ କଟକ ଓ କୋରାପୁଟ ଦ୍ୱାରା ପ୍ରସାର କରାଯାଇ ଜନ ମାନସକୁ ଉଦ୍‌ବୁଦ୍ଧ କରିଛି ।

ଶ୍ରୀଯୁକ୍ତ ରଥ ତାଙ୍କର କାବ୍ୟ, କବିତାରେ ଜୀବନାଦର୍ଶ, ରୁଚି, ସାମାଜିକ ବ୍ୟବସ୍ଥା, କୁସଂସ୍କାର, ଅନ୍ଧବିଶ୍ୱାସ, ରାଜନୈତିକ ଅବସ୍ଥା ସମ୍ପର୍କରେ ଆଙ୍ଗୁଳି ନିର୍ଦ୍ଦେଶ କରି ଆସିଛନ୍ତି । ଯାହାକୁ ପାଠକମାନେ ପଠନ କଲାପରେ ମଧ୍ୟ ଭୁଲି ପାରନ୍ତି ନାହିଁ । କାବ୍ୟ, କବିତାରେ ଉପଯୁକ୍ତ ଭାଷା ଦେବା ଦ୍ୱାରା ପାଠକ ପାଠିକାଙ୍କ ହୃଦୟସ୍ପର୍ଶୀ ହୋଇପାରିଛି ।

କବି ଶ୍ରୀଯୁକ୍ତ ରଥଙ୍କର "କଳ୍ପନା କୁସୁମ" ପ୍ରଥମ କବିତା ସଂକଳନ । ଏଥିରେ ଥିବା ବିଭିନ୍ନ କବିତା, ବିଭିନ୍ନ ଅଭିଜ୍ଞତା ଉପରେ ଆଧାରିତ । "ଯଯାତି" କାବ୍ୟ ଦ୍ୱିତୀୟ ସଂକଳନର ରୂପ ନେଇଛି । ଏଥିରେ ସନ୍ନିବେଶିତ ପ୍ରତ୍ୟକ ଚରିତ୍ରରୁ ଅନେକ କିଛି ଶିଖିବାର ଅଛି ।

କବି ଶ୍ରୀଯୁକ୍ତ ରଥଙ୍କର ଯଯାତି କାବ୍ୟ ପାଞ୍ଚସର୍ଗ ବିଶିଷ୍ଟ । ପ୍ରତ୍ୟେକ ସର୍ଗ ଦୀର୍ଘ ହୋଇଥିଲେ ହେଁ, ବିଷୟବସ୍ତୁ ଓ ସଂଳାପ ଅତି ଉଚ୍ଚକୋଟୀର । ପ୍ରତ୍ୟେକ ସର୍ଗର ବର୍ଣ୍ଣନା, ଭାଷାଭଙ୍ଗୀ ଓ ରୂପ ଲାବଣ୍ୟ ପାଠକ ପାଠିକାମାନଙ୍କର ହୃଦୟସ୍ପର୍ଶୀ ହେବ ନିଶ୍ଚିତ ।

ଆଶାକରେ ପାଠକମାନେ ତାଙ୍କର କାବ୍ୟ ପାଠ କରି ଆନନ୍ଦିତ ହେଲେ, ଅନ୍ୟ କାବ୍ୟ ଓ କବିତା ଗୁଡ଼ିକୁ ପ୍ରକାଶ କରିବାର ପ୍ରେରଣା ମିଳିବ ।

**ମନୋଜ କୁମାର୍ ନନ୍ଦ**
ଗୋବିନ୍ଦପୁର, ସାହାନିଆଜପୁର
ନିଶ୍ଚିନ୍ତକୋଇଲି, କଟକ



## ଏ କବିଙ୍କ ନିଜକଥା ...

ଜୀବନର ବିଭିନ୍ନ ଅନୁଭୂତିକୁ କବିତା ରୂପରେ ସାଇତି ରଖିବାର ସଉକ୍ ଥିଲା ପିଲା ଦିନରୁ । ସମୟ କ୍ରମେ ଥରେ ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ "ଯଯାତି" ଉପନ୍ୟାସ ପଢିବାର ସୁଯୋଗ ପାଇଲି । "ଯଯାତି" ଚରିତ ସମ୍ବନ୍ଧରେ ପୂର୍ବରୁ କିଛି ଧାରଣା ଥିଲେ ବି ଉପନ୍ୟାସର ବର୍ଣ୍ଣନା ଶୈଳୀ ମୋ ମନକୁ ବେଶ୍ ଛୁଇଁଥିଲା । ଏପରିକି ସେହି ଉପନ୍ୟାସଟି ପଢିବା ସମୟରେ ମୁଁ ନିଜକୁ ଭୁଲି ଯାଇଥିଲି । ପଢି ସାରିବା ପରେ ମୋର ମନେ ହେଲା ଏହି ବିଷୟ ବସ୍ତୁକୁ କାବ୍ୟ ରୂପ ଦେଲେ କେମିତି ହୁଅନ୍ତା । ମନ ଲାଗିଗଲା । ଲେଖା ଆରମ୍ଭ କଲି । ତା ୧୨/୧୧/୮୩ ଶନିବାର ଦିନ ଲେଖିବା ଆରମ୍ଭ କଲି । ମୁଁ ଜାଣେନି ସେ ଲେଖନୀ କେମିତି ଚାଲିଲା । ସେ ସମୟରେ ମୁଁ ଖାଇବା ପିଇବା ଶୋଇବା ପ୍ରାୟ ଭୁଲି ଯାଇଥିଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତା ୧୭/୧୨/୮୩ ଶନିବାର ଦିନ, ମାତ୍ର ଛତିଶ ଦିନରେ କାବ୍ୟ ରଚନା ସମ୍ପୂର୍ଣ୍ଣ ହୋଇଗଲା ।

ମୋର ଲେଖକ ଜୀବନରେ ଯେତେ ଯାହା ଲେଖିଛି ଏହି କାବ୍ୟ ରଚନା ସମୟରେ ନିଜକୁ ହଜେଇଦେବା ଓ ମଜ୍ଜେଇ ଦେବା ଭଳି ମଧୁର ମୁହୂର୍ତ୍ତ ଆଉ କେବେ ଅନୁଭବ ହୋଇନାହିଁ । ଏଥିରେ ବର୍ଣ୍ଣିତ ବିଷୟବସ୍ତୁ ଓ ବର୍ଣ୍ଣନା ଶୈଳୀ ପାଠକ ମାନଙ୍କର ତୃଷ୍ଣା ମେଣ୍ଟାଇବାରେ ସାହାଯ୍ୟ କରିବ, ଏଥିରେ ସନ୍ଦେହ ନାହିଁ ।

ନିଜ ବିଷୟରେ ନିଜେ ଅଧିକ ଲେଖିବା ପାଇଁ ମୁଁ ଉଚିତ୍ ମନେ କରୁନି । ଅଗଣିତ ପାଠକ-ପାଠିକା ଏହାକୁ ପାଠକରି ଯଦି କିଛି ଆନନ୍ଦ ପାଆନ୍ତି; କିଛି ଶିକ୍ଷା ପାଆନ୍ତି ତେବେ ମୋର ଶ୍ରମ ସାର୍ଥକ ହେଲା ବୋଲି ଭାବିବି ।

ପ୍ରଖ୍ୟାତ କବି ଓ ସୁସାହିତ୍ୟିକ ଶ୍ରୀଯୁକ୍ତ କବିବର ପରିଡ଼ା ମହାଶୟ ଏ କାବ୍ୟର ପ୍ରୁଫ୍ ଦେଖିବା ସହିତ ମୁଖବନ୍ଧ ଲେଖିଛନ୍ତି। ତାଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା । ମୋର ବନ୍ଧୁ ଶ୍ରୀଯୁକ୍ତ ପଣ୍ଡିତ ଉପେନ୍ଦ୍ର ଭଞ୍ଜ ରାଉତ ଯଯାତି କାବ୍ୟର ପାଣ୍ଡୁଲିପିକୁ ସଂଶୋଧନ କରିଥିବାରୁ ମୁଁ ଶ୍ରୀଯୁକ୍ତ ରାଉତଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି । ଭଦ୍ରେଶ୍ୱର ନିବାସୀ (ରାଉରକେଲାସ୍ଥିତ) ମୋର ଦ୍ୱିତୀୟ ଜାମାତା ମନୋଜ କୁମାର ନନ୍ଦ ପ୍ରକାଶନର ଦାୟିତ୍ୱ ନେଇଥିବାରୁ ତାଙ୍କୁ ଧନ୍ୟବାଦ ଦେଉଛି ।

ପରିଶେଷରେ ମୋ ହୃଦ-ଉଦ୍ୟାନରେ ଫୁଟିଥିବା ଏହି ଫୁଲଟିକୁ ଉତ୍କଳ ଭାରତୀଙ୍କ ଚରଣ କମଳରେ ଅର୍ପଣ କରି ରହୁଛି ।

**ବ୍ୟୋମ ବିହାରୀ ରଥ**

*ଅବସର ପ୍ରାପ୍ତ ଶିକ୍ଷକ*

*ସରକାରୀ ଉଚ୍ଚ ବିଦ୍ୟାଳୟ*

*ଶଙ୍କରପୁର, କଟକ*

# ଅଭିମତ

*ପଣ୍ଡିତ ଉପେନ୍ଦ୍ର ଭଞ୍ଜ ରାଉତ*
ସାହିତ୍ୟାଚାର୍ଯ୍ୟ, ସମରଜ୍ୟୋତି
ଅବସର ପ୍ରାପ୍ତ ବରିଷ୍ଠ ସଂସ୍କୃତ ଶିକ୍ଷକ
ରାଉରକେଲା ଷ୍ଟିଲ ପ୍ଲାଣ୍ଟ ବିଦ୍ୟାଳୟ

ଶିକ୍ଷକ ବନ୍ଧୁ ତଥା ସୁସାହିତ୍ୟିକ ବ୍ୟୋମବିହାରୀ ରଥଙ୍କ ଲେଖନୀ ନିସୃତ ଯଯାତି କାବ୍ୟର ପାଣ୍ଡୁଲିପି ମୋତେ ଶ୍ରୀମାନ୍ ମନୋଜ କୁମାର ନନ୍ଦ ପାଠ କରିବାର ସୁଯୋଗ ପ୍ରଦାନ କରିଥିବାରୁ ମୁଁ ମୋ ହୃଦୟର କୃତଜ୍ଞତା ଉଭୟଙ୍କ ନିକଟରେ ଅର୍ପଣ କରୁଛି । ଯଯାତି କାବ୍ୟର ଶବ୍ଦ ସଂଯୋଜନା, ଭାଷା ବିନ୍ୟାସ ତଥା ଅଳଙ୍କାର ଶୈଳୀ କବିଙ୍କର ବହୁ ଶାସ୍ତ୍ର ପ୍ରମାଣ ପ୍ରଦାନୀ ଥାଏ ।

ଆଶାକରେ ଯଯାତି କାବ୍ୟ ସୁଧୀ ପାଠକଙ୍କ ମହଲରେ ନିଶ୍ଚୟ ଆଦୃତ ହେବ ।

କବି ବନ୍ଧୁଙ୍କ ଅପ୍ରକାଶିତ ଅନ୍ୟାନ୍ୟ କାବ୍ୟ ଗୁଡ଼ିକ ପ୍ରକାଶ ପାଇଁ ଉତ୍କଳ ଭାରତୀଙ୍କ ଗନ୍ତାଘରକୁ ସମୃଦ୍ଧ କରିବାରେ ସହାୟକ ହେଉ ଶ୍ୱେତ ପଦ୍ମାଙ୍କ ଚରଣରେ ଶ୍ରୀ ଭଞ୍ଜର ବିନମ୍ର ପ୍ରଣତି ।

ଇତି
**ପଣ୍ଡିତ ଉପେନ୍ଦ୍ରଭଞ୍ଜ ରାଉତ**
ଅବସର ପ୍ରାପ୍ତ ବରିଷ୍ଠ ଶିକ୍ଷକ
ଘର ନଂ - ଏ / ୨୮୮, ସେକ୍ଟର- ୧୬
ରାଉରକେଲା - ୩





# ମଙ୍ଗଳାଚରଣ

ଅଗ୍ରେ-ପୃଷ୍ଠେ-ଅଧଃ-ଊର୍ଦ୍ଧ୍ୱେ-ଚଉଦିଗେ କରୁଅଛି ନମସ୍କାର,
ଅନନ୍ତ ବୀର୍ଯ୍ୟ-ଅମୀତ ପରାକ୍ରମୀ ସର୍ବବ୍ୟାପୀ ସର୍ବେଶ୍ୱର ।।

ଅନନ୍ତ କୋଟି ବ୍ରହ୍ମାଣ୍ଡ ହୁଅଇ ଯା ଇଙ୍ଗିତରେ କାରବାର,
ଅନାଦି ଅବ୍ୟକ୍ତ ଅଦି ଅଣକାର ! ପ୍ରଣାମ ମୋ ବାରବାର ।।

ଅଷ୍ଟାଙ୍ଗ ଯୋଗରେ ଯୋଗୀଦିନ ପାରେ ମାନସେ କରନ୍ତି ଲୟ,
ଅନ୍ଧକାର ପର ପରମ ଈଶ୍ୱର ପାଶେ ହେଉ ମନ ଥୟ ।।

ଅନେକ ଦିନରୁ ଅଭିଳାଷ ଥିଲା କାବ୍ୟ ରଚନାର ପାଇଁ,
ଅଧମ ବ୍ୟୋମ ଅଖିଳେଶ ଇଙ୍ଗିତ ଅପଲକେ ଥିଲା ଚାହିଁ ।।

ଅନ୍ତରେ କରୁଣା କରର ପ୍ରେରଣା-ପ୍ରବାହ ଉଚ୍ଛୁଳି ଗଲା,
ଅନେକ ଦିନର ଆଶା ଲେଖନୀରେ ରୂପ ନେବାକୁ ବସିଲା ।।

ଅର୍ଗଳ ସକଳ ଦୂର କରିବ ମୋ ରଚନା କାଳରେ ରହି
ଅହରହ ବୀଣାପାଣିଙ୍କୁ କଳ୍ପନା-ଫଳକେ ବସାଇ ଦେଇ ।।





# ପ୍ରଥମସର୍ଗ

## ରାଗ-ବଙ୍ଗଳାଶ୍ରୀ

ନହୂଷ ନଗର ସାଗର ହେଲେ ତ ଅନ୍ୟ ରାଜ୍ୟ ସରୋବର
ନହୂଷ ନଗର ହେଲେ ସୁଧାକର ଅନ୍ୟ ନକ୍ଷତ୍ର ନିକର । ୧।

ନହୂଷ ନଗର ନନ୍ଦନ କାନନ ହେଲେ ଅନ୍ୟ ଉପବନ,
ସୌର୍ଯ୍ୟ-ବୀର୍ଯ୍ୟ ଆଉ ସୁଷମାରେ କେହି ନ ହେବେ ତା'ର ସମାନ ।୨।

ସୌର୍ଯ୍ୟମାନଙ୍କର ଅସ୍ତ୍ରର ଝଙ୍କାର କାର୍ମୁକ ଟଙ୍କାର ଶୁଣି;
ପଡ଼ୋଶୀ ରାଜ୍ୟର ରାଜାମାନଙ୍କର ରକ୍ତ ହୋଇଯାଏ ପାଣି ।୩।

ପ୍ରାସାଦର ହୀରା-ନୀଳାର ଝଲକ ନିନ୍ଦେ ନଭ ତାରକାରେ;
ବୀରତ୍ୱ ପ୍ରମାଣ ପ୍ରତିଭାତ ହୁଏ ଅବନୀରେ ଅମ୍ବରରେ । ୪।

କାର୍ମୂକ ପ୍ରଭାବେ ଅବନତ କରି ଅବନୀର ନୃପଗଣେ;
ସୁରପୁରକାୟ କରିବା ବାସନା ବଳିଲା ନୃପତି ମନେ ।୫।

ସାଜି ବୀରବେଶ ନହୂଷ ନରେଶ ସୁରେଶ ସଙ୍ଗତେ ଲଢି
ଅମର ପୁରରୁ ଅଚିରେ ସକଳ ଅମରଙ୍କୁ ଦେଇ ତଡ଼ି ।୬।

ଅତି ବଳବନ୍ତ ନହୁଷ ନୃପତି ସୁର ପୁର କରିଜୟ,
ଇନ୍ଦ୍ରାଣୀ ସମ୍ଭୋଗ ବାସନାରେ ମନ ହୋଇଲା ତାଙ୍କ ଅଥୟ ।୭।

ପେଷିଲେ ବାରତା ସ୍ୱର୍ଗ ଅଳଂକୃତା ଶଚୀ ଦେବୀଙ୍କର କତି,
ପତି ରୂପେ ମତି ବଳିଲେ ଯୁବତୀ ସେବିବ ଚରଣେ ନିତି ।୮।

ରସବତୀ ପ୍ରୀତି ପୀୟୂଷେ ନୃପତି ମତି ଅତି ଅସମ୍ଭାଳ,
ଜଣାଇଲା ଦୂତୀ ସତୀ ପାଶେ ଅତି ବିଳମ୍ବ ନ କରି କାଳ ।୯।

ସୁରପତି ଅଙ୍କ ଶାୟିନୀ ନୃପତି ଦରୀ ଦଳିବା ପାଇଁ,
ଚତୁରୀ ପଣର ପରିଚୟ ଦେଲେ ଦୂତୀକୁ ଏମନ୍ତ କହି ।୧୦।





ସୁରପତିଙ୍କର ଆସନେ ଆସୀନ ହୁଅନ୍ତି ଯେ ଯେତେବେଳେ,
ତାଙ୍କ ମନ ତୋଷ କରିବାରେ ରୋଷ ନଥାଏତ ମୋର ତିଳେ ।୧୧।

ନହୁଷ ନୃପତି ବୀର ବୈଜୟନ୍ତୀ ସୁର ପୁରେ ସୋହେ ଆଜି,
ତାଙ୍କ ବନ୍ଦାପନା ପାଇଁ ମୁଁ ଉନ୍ମନା ଆସନ୍ତୁ ସୁବେଶ ସାଜି ।୧୨।

ରତ୍ନ ପାଲିଙ୍କିରେ ଆସିବେ ଆରୋହୀ ସପ୍ତର୍ଷି ବାହିବେ ତାହା,
ତେବେ ତାଙ୍କ ପ୍ରତି ପ୍ରୀତି ଦାନେ ମୋର ଆପତ୍ତି ନଥିବ ଆହା ।୧୩।

ଦୂତୀ ମୁଖୁ ଶୁଣି ନୃପ ଶିରୋମଣି ଗଣି ଗଣି ଦଣ୍ଡଲିତା,
ଅନଙ୍ଗ ଶାୟକେ ଅଙ୍ଗ ଦୂକୂଳକୁ ଅନୁଭବିଲେଣି ପିତା ।୧୪।

ଦିବସକୁ ନିଶି ରବି କରେ-ଶଶି- ହୀମକର ମନେ ଭାବି
ମହାମହା ସପ୍ତରଷିଙ୍କୁ ବାହକ ପ୍ରସ୍ତାବେ ଦେଲେ ପ୍ରସନ୍ନେ ।୧୫।

ଇନ୍ଦ୍ରଙ୍କ ବଜ୍ରର ପ୍ରତି ଅସ୍ତ କରି ପରାଭୂତ କଲେ ଯିଏ,
ଫୁଲ ଶରାଘାତେ ଦେଖ ତାଙ୍କ ବୁଦ୍ଧି କେଉଁପରି ହଜିଯାଏ ।୧୬।

ଫୁଲଶର ଅତି କୋମଳ ହେଲେହେଁ ମର୍ମ ସ୍ଥାନେ ଯାଏ ଗଳି,
ବାଜୁବାକୁ ମହାବଳୀ ଏ ସହସା ତଳକୁ ପଡ଼ନ୍ତି ଟଳି ।୧୭।

ଅତନୁ ବାଣରେ ତନୁମନ ତାଙ୍କ ହୋଇଅଛି ଅବସନ୍ନ,
ବିବେକ ଅଙ୍ଗନେ ଗାଡ କାଦମ୍ବିନୀ ହୋଇଅଛି ସମାଛନ୍ନ ।୧୮।

ବିଚାର-କୁସୁମ ପାଖୁଡ଼ା ଯାଇଛି କାମ ବୃଷ୍ଟିପାତେ ଝଡ଼ି,
ଜ୍ଞାନ-ବୃକ୍ଷ ଶଚୀ ଭୋଗ ପ୍ରଭଞ୍ଜନେ ଯାଇଛି ଭୂତଳେ ପଡ଼ି ।୧୯।

ସପ୍ତର୍ଷି ବାହନ୍ତି ରତନ ପାଲିଙ୍କିନୃପତି ଆଦେଶ ପାଇ,
କାମନା ବିହୀନ ସପ୍ତ ମହାମନା କାମୁକ କାମନା ପାଇଁ ।୨୦।

ଦଣ୍ଡ କମଣ୍ଡଳୁ ଧ୍ୟାନ-ଧାରଣାରେ ସମାଧିସ୍ଥ ମହାମୁନି,
ବାହି ନଜାଣନ୍ତି ରତନ ପାଲିଙ୍କି ବିଳମ୍ବ ହୁଏ ଉଜାଣି ।୨୧।

ଯେତିକି ବିଳମ୍ବ ହେଉଥାଏ ଏଣେ ସେତିକି ବିରହ-ବାରି,
ଧୈର୍ଯ୍ୟ-କୂଳ ଲଙ୍ଘି ନୃପ ହୃଦୟରେ ଚିତ୍ତ ଦେଉଥାଏ ଘାରି ।୨୨।

ହଜାଇ ବିବେକ ଅଗସ୍ତିଙ୍କ ବେକ ମୂଳେ କଲେ ପଦାଘାତ,
ଚାଲିବାକୁ ମୁନି କୁଣ୍ଠିତ କାହିଁକି ? ହୋଇଛନ୍ତ ବପୁକ୍ଷନ୍ତ ।୨୩।





ନୃପତିଙ୍କ ଘୋଡ଼ା ନୁହେଁ ସେ କୋରଡ଼ା ମାଡରେ ଯିବ ଦଉଡ଼ି,
ଗଣ୍ଡୁଷକେ ସପ୍ତସିନ୍ଧୁ ଶୋଷି ସେତ ଉଦରରେ ଥିଲେ ଭିଡ଼ି ।୨୪।

ଆତାପି ବାତାପି ଅସୁରଙ୍କୁ ଯିଏ କରିଥିଲେ ଭସ୍ମିଭୂତ,
ତାଙ୍କ ଶିରେ ପାଦ ମାରି ଦେଇଛନ୍ତି ପୁରୁରବାଙ୍କର ସୁତ ।୨୫।

ମୁନି ନୟନରୁ ବ୍ରହ୍ମ ଅଗ୍ନି କଣା ସହସା ଉଠିଲା ଜଳି,
କମ୍ପିଲା ଗଗନ ସପ୍ତସିନ୍ଧୁ ଜଳ ପଡ଼ିଲା କିବା ଉଛୁଳି ।୨୬।

ନିଶ୍ୱାସ ପବନେ ଅଣଚାଷ ବାୟୁ ଘୂର୍ଣ୍ଣିବାତ୍ୟା କଲା ସୃଷ୍ଟି,
ଅଶନି ଶବଦେ ନୃପତି ଉଦ୍ଦେଶ୍ୟେ ଅଭିଶାପ ହେଲା ବୃଷ୍ଟି ।୨୭।

ଶାରୀରିକ ସୁଖ ସମ୍ଭୋଗରେ ମୂର୍ଖ ଦୁଃଖ ଦେଲୁ ଋଷିଗଣେ,
ନପାଇବୁ ସୁଖ ନିଜେ ତୋ ଜୀବନେ ନପାଇବେ ପୁତ୍ର ଗଣେ ।୨୮।

ଅନବରତରେ ଦୁଃଖରେ ତୋହର ବଂଶରେ କାଟିବେ କାଳ,
ତୋ ଅପକର୍ମର ପ୍ରତି ଫଳ ଭୋଗ, ରହିଯା ଅବନୀତଳ ।୨୯।

ସ୍ୱର୍ଗ ପୁରେ ଆଉ ନ ପାରିଲେ ରହି ଖସିଲେ ଅବନୀତଳ,
ହସ୍ତୀନା ସମ୍ରାଟ ହୋଇବି ସୁଖରେ ନ କଟିଲା ତାଙ୍କ କାଳ ।୩୦।

ପୁତ୍ର ସୁଖରୁ ସେ ହୋଇଲେ ବଞ୍ଚିତ ଦୀର୍ଘ ଦିନ ଗଲା ବହି,
ମହାରାଜା ଲାଜେ ମହାରାଣୀଙ୍କର ମୁଖ ନପାରନ୍ତି ଚାହିଁ ।୩୧।

ଶେଷେ ଦୁହେଁ ମିଶି ଅଙ୍ଗିରସ ଋଷି ପାଶେ କଲେ ନିବେଦନ,
ମୁନି କଲ୍ୟାଣରୁ ଅଚିରେ ସାମ୍ରାଜ୍ଞୀ ଲଭିଲେ ପୁତ୍ର ରତନ ।୩୨।

ରାଜକୀୟ ଆଡ଼ମ୍ବରେ ସମାରୋହ ହୋଇଲା ନାମକରଣ,
"ଯତି" ବୋଲି ପୁତ୍ର ନାମ ସେ ରଖିଲେ ଯତିଏ କଲେ କଲ୍ୟାଣ ।୩୩।

ଶୁକ୍ଳ ପକ୍ଷେ ପୂର୍ଣ୍ଣ ଚନ୍ଦ୍ର ପରି ଧୀରେ ବଢିଲେ ନୃପ ନନ୍ଦନ,
ପ୍ରତି ବର୍ଷ ଜନ୍ମ-ଦିବସେ ନୃପତି ଲୋଡ଼ନ୍ତି ମୁନି କଲ୍ୟାଣ ।୩୪।

ପାଞ୍ଚ ବର୍ଷ ପୂର୍ତ୍ତି ହୁଅନ୍ତେ ନୃପତି ଯତିକୁ ଆଶ୍ରମେ ନେଇ,
ବିଦ୍ୟା ଶିକ୍ଷା ପାଇଁ ରଖାଇଲେ ଯତି ପଢେ ପାଠମନ ଦେଇ ।୩୫।

ଅକସ୍ମାତେ ଦିନେ ମୁନି ଗଣେ ବସି କରୁଥିଲେ ଆଲୋଚନା,
ଅଗସ୍ତିଙ୍କ ଅଭିଶାପେ ରାଜ ବଂଶେ ସୁଖ ହୋଇଅଛି ଉଣା ।୩୬।





ସୁଖୀ ହେବେ ନାହିଁ ପୁତ୍ର ପୌତ୍ର କେହି ନହୁଷ ରାଜାର କୁଳେ,
ପିତୃ ସୁକୃତରୁ ପୁତ୍ର ସୁଖ ସିନା ସ୍ୱବଂଶରେ ପ୍ରତି ଫଳେ।୩୭।

ଅଗସ୍ତିଙ୍କ ଶିରେ ପଦାଘାତ କରି ଅରଜିଛନ୍ତି ଯେ ପାପ,
ତାର ପ୍ରତିଫଳେ ଦୁଃଖୀ ହେବେ ସର୍ବେ ଋଷି ଦେଇଛନ୍ତି ଶାପ।୩୮।

ଅନ୍ତରାଳେ ଥାଇ ଏହି ଆଲୋଚନା ଯୁବରାଜ ଶୁଣି ପାରି,
ଭାବିଲେ ତେବେ ଏ ରାଜଭୋଗ ପାଇଁ ହେବି ନାହିଁ ଆଉ ଘାରି।୩୯।

ସୁଖ ଯେବେ ନାହିଁ ରାଜ ସମ୍ପଦରେ ସନ୍ନ୍ୟାସୀ ହୋଇବା ଭଲ,
ବ୍ରହ୍ମାନନ୍ଦ ଶାନ୍ତି ଅନୁସନ୍ଧାନରେ ନ କାଟିବି କିଆଁ କାଳ ?୪୦।

ସେହି ମୁହୂର୍ତ୍ତରେ ତେଜିଲେ ଆଶ୍ରମ ନ ପାଇଲେ କେହି ଭେଟ,
ରାଜା ରାଣୀଙ୍କର ଲଲାଟେ ଅଗସ୍ତି ଶାପ ମାରିଲା କି ଚୋଟ।୪୧।

ହସ୍ତିନା ଆକାଶେ ଶୁଭ୍ରାଲୋକ ବୁଣି ନହୁଷ-ସୁଧାଂଶୁ ସମ,
ପରଜା ରଞ୍ଜନେ ଐଶ୍ବର୍ଯ୍ୟ ମଣ୍ଡନେ ହୋଇଥିଲେ ସଦା କ୍ଷମ।୪୨।

ନଥିଲା କାହାର ଅଭାବ ଆହାର ବସ୍ତ୍ର-ବାସ-ଦାନ-ଧ୍ୟାନେ,
ଯାଗ-ଯଜ୍ଞେ ରତ ମୁନି ମୁନିସୁତ ରହୁଥିଲେ ଅନୁକ୍ଷଣେ।୪୩।

ସମ୍ପଦର ବନ୍ୟା ହେଉଥିଲା ଧନ୍ୟା ନୃପତି ପ୍ରାସାଦେ ରହି,
ମାତ୍ର ନୃପତିଙ୍କ ଅନ୍ତରରେ ସୁଖ ତିଳେ ମାତ୍ର ଥିଲା ନାହିଁ।୪୪।

ଯତିର ବିଚ୍ଛେଦ କରିଥିଲା ରୋଧ ସୁଖ-ସରିତର ପଥ,
ବାଳକ ରତନ କୋଳେ ଧରିବାର ବ୍ୟର୍ଥ ହେଲା ମନୋରଥ।୪୫।

କି ଲୋଡ଼ା ରତନ ମୋତି ମାଣିକ୍ୟରେ ସେ କିବା କହିବ କଥା,
ସବୁ ଥାଇ ଯଦି ପୁତ୍ର ରତ୍ନ ନାହିଁ ସେ ସବୁ ବିଭବ ବୃଥା।୪୬।

ରାଣୀ ହଂସପୁରେ ମହା ରାଣୀଙ୍କର ଅବାରିତ ଅଶ୍ରୁଧାର,
ଚିକୁର ଫଳକେ ଦିଶୁଥିଲା ସତେ ନିୟତି ଅଲିଭା ଗାର।୪୭।

ଦୈବ ଦରବାରେ ପ୍ରାର୍ଥନା କରିକେ ନିରାଶତ ହୋଇନାହିଁ,
ମନ ଧ୍ୟାନ ଦେଇ ଦୁଃଖ ଜଣାଇଲେ ପୁରାନ୍ତି ସେ ଭାବଗ୍ରାହୀ।୪୮।

ନରେଶଙ୍କ ଭିକ୍ଷାଥାଳ ପରିପୂର୍ଣ୍ଣ ହେଲା ବିଧାତାର ଦାନେ,
ମହାରାଣୀ ହେଲେ ଗର୍ଭବତୀ ଅତି ସନ୍ତୋଷ ସବୁରି ମନେ।୪୯।





କେତେ ଦାନ ପୂଣ୍ୟ ଦେବ ଅରଚନା ବ୍ରାହ୍ମଣ ଭୋଜନ ଦେଇ,
ସନ୍ତାନ କଲ୍ୟାଣ ପାଇଁ ନର ରାଣ ଭଣ୍ଡାର ଉନ୍ମୁକ୍ତ ଥାଇ।୫୦।

ଯଥା କାଳେ ରାଣୀ ପ୍ରସବିଲେ ସୁତ ଆସିଲେ ମୁନି ପଙ୍କତି,
ଆଶିଷ ବରଷି ଋଷିଗଣ ତୋଷେ ରଖିଲେ ନାମ ଯଯାତି।୫୧।

ରାଜ ଚକ୍ରବର୍ତ୍ତୀ ଚିହ୍ନ ଅଛି କରେ ସୌର୍ଯ୍ୟ ବୀର୍ଯର ଲକ୍ଷଣ,
ଲକ୍ଷ କରି ମହା ରାଜାରାଣୀଙ୍କର ବକ୍ଷ ଫୁଲେ ଅନୁକ୍ଷଣ।୫୨।

ଉତ୍ତର ଗୋଲାର୍ଦ୍ଧେ ହେଲେ ରବି ଉଦେ ଦିବସ ବଢିଲା ପରି,
ଯୁବରାଜ-ରବି- ପ୍ରସାଦ-ଗଗନେ-ତେଜ ରାଜେ ସେହିପରି।୫୩।

କେତେବେଳେ ପୁଷ୍ପ ବାଟିକାରେ ପୁଷ୍ପ ସୌରଭେ ରହନ୍ତି ଲାଖି,
କେତେବେଳେ ଦନ୍ତାବଳ ମୂର୍ତ୍ତି ଦନ୍ତ ବଳ ଦିଅନ୍ତି ପରଖି ।୫୪।

କେତେବେଳେ କ୍ଷୁଦ୍ର ଧନୁଧରି କରେ କରନ୍ତି ଶର ସନ୍ଧାନ,
କେତେବେଳେ ବୃକ୍ଷ ମୂଳେ ବସି ବ୍ରହ୍ମାନନ୍ଦ ପଦରେ ଚିନ୍ତନ।୫୫।

ଜ୍ୟୋତ୍ସ୍ନା ଧବଳିତ ହୀମକର ସ୍ନାତ ଉଦ୍ୟାନେ ନିର୍ଜନେ ବୁଲି,
ନଭ-ଉପବନ ତାରା-କୁସୁମର ହୋଇଯାନ୍ତି ମତ୍ତ ଅଳି।୫୬।

ମହାରାଜାଙ୍କର ହୃଦରତ୍ନହାର ମହାରାଣୀଙ୍କର ପ୍ରାଣ,
ଦାସୀ କୁମୁଦିନୀ ଗଣେ ଶଶୀ- ସମ ଯୁବରାଜ ଅନୁକ୍ଷଣ।୫୭।

କେଉଁ ଦାସୀ କେଶ ପିଂଟାଇ ବୋଲନ୍ତି ତୋ ସମକେ ଆଉ ନାହିଁ,
କାହା ବକ୍ଷୋଜରେ ମଥାରଖି କଥା ଶୁଣନ୍ତି ଚନ୍ଦ୍ରକୁ ଚାହିଁ।୫୮।

କହନ୍ତି ଜନନୀ ବାବୁ ଯଯାତିରେ ମୋତେ ତୁ ନଯିବୁ ଛାଡ଼ି,
ଯତି ପରି କଲେ ଗରଳ ଭକ୍ଷିବି ପ୍ରାଣପକ୍ଷୀ ଯିବ ଉଡ଼ି।୫୯।

କିଏ ସେ ଯତିମା କି କଲା ସେ ତୁମ ମନେ ଦେଲା ଏତେ ବ୍ୟଥା?
ତାହା ପରି କେବେ ହେବି ନାହିଁ ମୁହିଁ ତୁମକୁ ଦେଉଛି କଥା।୬୦।

ବାବୁରେ ଯଯାତି ଯତି ତୋ ଅଗ୍ରଜ କେଉଁ ଗୁଣେ ନୁହେଁ ଊଣା,
କି ହେଲା ଦୁର୍ଯୋଗ ଛାଡ଼ି ରାଜ ଯୋଗ କେଣେ ଗଲା ନାହିଁ ଜଣା।୬୧।

ନଛାଡ଼ିବି କେବେ ତୁମକୁ ମାଆ ମୁଁ ତୁମ ପାଶେ ଥିବି ରହି,
ରାଜଧର୍ମ ପାଳି ରାଜା ହେବି ଯେବେ ପିତା ଦେବେ ତୋଷ ହୋଇ।୬୨।





ପରଜାଙ୍କ ହିତେ ପରଜାଙ୍କ ବିତ୍ତ ବ୍ୟୟ କରି, ପ୍ରଜା ସୁଖ,
ବଢାଇ କାଳକୁ ପୂର୍ବଜଙ୍କ ଯଶ-କୀର୍ତ୍ତିର ହେବି ରକ୍ଷକ।୬୩।

ତୃଷାତୁର କଣ୍ଠେ ମନ୍ଦାକିନୀ ଜଳ ଦେଲେ ସେ ଖୁସି ଯେପରି,
ସେପରି ରାଣୀଙ୍କ ମନ ହେଲା ତୋଷ ସେ ବାକ୍ୟ ଶ୍ରବଣ କରି।୬୪।

କାବ୍ୟ ଶାସ୍ତ୍ର ନ୍ୟାୟ-ମିମାଂସା ଦର୍ଶନ ଧନୁର୍ବିଦ୍ୟା ମଲ୍ଲ ଯୁଦ୍ଧ,
ସବୁଥିରେ ଯୁବ- ରାଜ ପାରଙ୍ଗମ ସବୁଥିରେ ସ୍ୱତଃ ସିଦ୍ଧ।୬୫।

ଅଙ୍ଗିରସ ଋଷି ଆଶ୍ରମକୁ ଥରେ ଯଜ୍ଞରକ୍ଷା ପାଇଁ ଯାଇ,
ନିରାପଦେ ଯଜ୍ଞ ସମାପନ ପରେ ଆସିଲେ ଆଶିଷ ପାଇ।୬୬।

ଅଶ୍ୱମେଧ ଯଜ୍ଞ ଅଶ୍ୱ ସଙ୍ଗେ ଧରି ନାନା ରାଜ୍ୟ ଭ୍ରମି ଭ୍ରମି,
ନିଜ ପରାକ୍ରମ ପରିଚୟ ଦେଲେ ପିତାଙ୍କ ଚରଣେ ନମି।୬୭।

ନହୁଷଙ୍କ ନାମେ ସୁର ପୁରେ ସୁର ପତି କରୁଥିଲେ ଭୟ,
ଯଯାତିଙ୍କ ବଳ ବିକ୍ରମର ମର୍ତ୍ତ୍ୟ ବାସୀ ଖାଉଥିଲେ ଜୟ।୬୮।

ପଶୁ ରାଜ ସୁତ ପଶୁ ରାଜ ଏକା ଏଥିରେ ନାହିଁ ସନ୍ଦେହ,
ପିତା ଅନୁରୂପେ ପୁତ୍ର ପରାକ୍ରମେ ଅରି ହୃଦେ ହୁଏ ଭୟ।୬୯।

ଆଖେଟନ ଅର୍ଥେ ଯୁବରାଜ ଥରେ ନବରୁ ବାହାର ହୋଇ,
ଗହନ ଅରଣ୍ୟେ ଭ୍ରମିଭ୍ରମି ଶେଷେ ରଜନୀ ଯାପିଲେ ତହିଁ।୭୦।

ଜଗି ବସିଥାନ୍ତି ଧରି ଧନୁଶର ବୃକ୍ଷପରେ ସାବଧାନେ,
"ଡ଼ବ-ଡ଼ବ" ଶବ୍ଦ ଶୁଭିଲା ନଦୀରୁ ରତ କେହି ଜଳ ପାନେ।୭୧।

ଶବ୍ଦ ଅନୁସରି ଶବ୍ଦ ଭେଦୀ ବାଣ ପ୍ରୟୋଗ କଲେ ଯଯାତି,
ସହସା ଚିତ୍କାରେ ନର କଣ୍ଠସ୍ୱର ଶୁଭିଲା ଶ୍ରବଣ କତି।୭୨।

ନିଶାର୍ଦ୍ଧେକେ ମୁନି ଋଷି ହୋଇଥିବେ ଭାବି ଧାଇଁ ଯୁବରାଜ,
ଋଷି ପୁଙ୍ଗବଙ୍କ କରୁଣ ଚିତ୍କାରେ ମନେ ମନେ ପାଇ ଲାଜ।୭୩।

ବିନୟେ ଭାଷିଲେ କ୍ଷମ ଅପରାଧ ନଜାଣି କରିଛି ଦୋଷ,
ହସ୍ତୀନାର ରାଜ ପୁତ୍ର ମୁଁ ଅଟଇ ପିତା ମୋ ରାଜା ନହୁଷ।୭୪।

ନହୁଷ ରାଜାଙ୍କ ପୁତ୍ର ତୁମେ ଏହା ସ୍ନେହ ବିସ୍ମୟରେ ଭାଷି,
ତୁମେ ମୋ ଅନୁଜ ହେବ ଯୁବରାଜ କହି ସେ ଦେଲେ ଆଉଁଷି।୭୫।





ମାତାଙ୍କ ବଚନ ସୁମରି ଯଯାତି କହିଲେ ତୁମେ କି ଯତି ?
ଶୁଣିଛି ସକଳ ମାତାଙ୍କ ମୁଖରୁ ଘେନ ମୋ ନମ୍ର ପ୍ରଣତି ।୭୬।

ଯତି ଯଯାତିଙ୍କ ମିଳନର ଦୃଶ୍ୟ ଦେଖି ଦେଖି ନିଶା ପତି,
ଅବସନ୍ନ ହୋଇ ଅସ୍ତାଚଳ ଚୂଳେ ବିଶ୍ରାମ ନେଲେ ଝଟତି ।୭୭।

ଆମ ସାକ୍ଷାତର ସନ୍ଦେଶ କାହାରେ କରିବୁ ନାହିଁ ପ୍ରକାଶ,
ମୋ ସାଧନା ପଥେ ପ୍ରତିବନ୍ଧ କର ଥିବନାହିଁ ଅବକାଶ ।୭୮।

ଯତି ଉପଦେଶ ଶିରୋଧାର୍ଯ୍ୟ କରି ଯଯାତି ଆସିଲେ ଫେରି,
ରାଜଭୋଗ ସଙ୍ଗେ ଯୋଗୀ ଯୋଗ ରସେ ବିଚାର ବିମର୍ଷ କରି ।୭୯।

ନହୁଷ ନୃପତି ହେଲେ ଶଯ୍ୟାଶାୟୀ ଦିନୁ ଦିନ ତନୁକ୍ଷୀଣ,
ନଶ୍ୱର ଶରୀର ତେଜି କାଳ ଗର୍ଭେ ହୋଇଗଲେ ଦିନେ ଲୀନ ।୮୦।

ଧନ ଦରବର ରାଜ କ୍ଷମତାର ଭୋଗ ବାସନାର ମୋହ,
ଘଡ଼ିକେ ତୁଟିଲା ଦେହୀ ଯେ ଛୁଟିଲା ନବରେ ଫୁଟିଲା କୋହ ।୮୧।

ସୃଷ୍ଟି-ସ୍ଥିତି-ଲୟ କାରଣ ସମୟ କରତାଙ୍କ ଦୀପ୍ତି ସ୍ରୋତ,
ଯେତେବେଳେ ଯାହା ଭାଗ୍ୟେ ଯାହାଥାଏ ହୁଏ ତା ପ୍ରତି ଫଳିତ ।୮୨।



*ଆଖେଟନ ଅର୍ଥ ଶିକାର*





# ଦ୍ୱିତୀୟସର୍ଗ

## ରାଗ-ଖଣ୍ଡକୁମ୍ଭକାମୋଦୀ

ତୁଷାର ଧବଳ ହିମାଳୟ ଗିରି ପାଦ ଦେଶରେ,
ମହାତପା ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମ ରମ୍ୟ ବେଶରେ ।୧।

ବେଦମନ୍ତ୍ର ନାଦେ ଗିରିବନ କରି ପ୍ରତିଧ୍ୱନିତ,
ଗିରିଶିରେ ହୀରାଖଣ୍ଡ ପରିଥିଲା ଚିର ଶୋଭିତ ।୨।

ପୂର୍ବାଶା ସୁନ୍ଦରୀ ଭାଲେ ଯଥା କାବ୍ୟ ତାରା ବିରାଜେ,
ଚନ୍ଦ୍ର ଚୂଡ଼ ଶିରେ ଚନ୍ଦ୍ରିକା ଯେସନ ଶୋଭା ସରଜେ ।୩।

ଫଣୀ ଶିରେ ମଣିପରି ଭୟଙ୍କର ପୁଣି ସୁନ୍ଦର,
ଉଭୟ ଭାବର ହୋଇଥିଲା ତହିଁ ସୁଷମା ହାର ।୪।

ମହା ତପସ୍ୟାରେ ତୋଷ କରି ମୁନି ନଗଜା ପତି,
ମୃତସଞ୍ଜୀବନୀ ମନ୍ତ୍ରତାଙ୍କୁ ହୋଇଗଲା ପ୍ରାପତି ।୫।

ଦେବାସୁର ଯୁଦ୍ଧେ ଅସୁରଙ୍କ ନାଶ ନସହି ପାରି,
ଆଚରି ଏତପ ସିଦ୍ଧିକରି ଯପ ଆସିଲେ ଫେରି ।୬।

ଅସୁରଙ୍କ ରାଜା ବୃଷପର୍ବା ମୁନି ଅସୁର ଗୁରୁ,
ଅସୁରମାନଙ୍କ ଆଶା ଭରସାର କଳପତରୁ ।୭।

ଦେବରାଜାଙ୍କର ଆଶା-ଉଦ୍ୟାନର ଚଡ଼କ କିସେ?
ତାଙ୍କ ନାମ ଶୁଣି ହୃଦୟରୁ ଦୀର୍ଘ ନିଶ୍ୱାସ ଖସେ ।୮।

ମୃତ ସଞ୍ଜୀବନୀ ମନ୍ତ୍ରବଳେ ମୃତ ଅସୁରେ ଜେଇ,
ସତେକି ସ୍ୱରଗେ ସୁରଗଣେ ଆଉ ଦେବେ ରଖେଇ ।୯।

କିପରି ହୋଇବ ତାଙ୍କଠାରୁ ସେହି ମନ୍ତ୍ରହରଣ,
ସୁର ପତିଙ୍କର ଦୀର୍ଘ ନିଶ୍ୱାସର ସେହି କାରଣ ।୧୦।

ଦେବତାଙ୍କ ହିତେ ଶରୀର ପତନେ ନକରି ଭୟ,
ମନ୍ତ୍ରର ସାଧନ ପାଇଁ ମନେ କଚ କରି ନିଶ୍ଚୟ ।୧୧।



ପରିଚାର ସମ ଶୁକ୍ରଙ୍କର ସେବା କରନ୍ତି ଆସି,
ମୁନିଙ୍କୁ ସତତ ମଧୁର ବିନୟ ବଚନେ ତୋଷି । ୧୨ ।

ଶୁକ୍ରାଚାର୍ଯ୍ୟଙ୍କର ମାତୃହୀନା କନ୍ୟା ଦେବଯାନୀର,
ଜୀବନେ ବସନ୍ତ ଆସୁଥିଲା ଧରି ରୂପ କୁଆର । ୧୩ ।

ସହଜେ ଥିଲାସେ ରୂପସରସୀର କମଳ କଳି,
ଯୌବନ -ଭାସ୍କର -କର ପାତେ ପୁଣି ଉଠିଲା ଝଲି । ୧୪ ।

ସୁଷମା ବିବାଦେ ସୁର ପୁର ବାମା ସମାନତାର-
ହେବେ ନାହିଁ କେବେ ହିମାଳୟେ କଲେ ତପସ୍ୟା ଘୋର । ୧୫ ।

ନୃତ୍ୟ-ଗୀତ-କାବ୍ୟ-ଶାସ୍ତ୍ରରେ ତା ସମ ନ ଥିଲେ କେହି,
ପାଉଥିଲେ ଲାଜ ଅପସରୀ କେଶ ବିନ୍ୟାସ ଚାହିଁ । ୧୬ ।

ଦେବଯାନୀ ରୂପ ସଙ୍ଗେ କଚଗୁଣ -ସୁବାସ ମିଶି,
ଆଶ୍ରମର ତରୁଲତା ଫୁଲ ଫଳ ଉଠିଲେ ହସି । ୧୭ ।

କଚଗୁଣେ ମୁଗ୍ଧ ଦେବଯାନୀ ହୃଦ ପଦ୍ମେ ଉଚ୍ଛୁଳି,
ଘଡ଼ିଏ ନ ଦେଖି ପୂର୍ଣ୍ଣେନ୍ଦୁ ବଦନୀ ହୁଏ ବାତୁଳୀ । ୧୮ ।

କଚ ଫୁଲ ତୋଳେ ବୃକ୍ଷଶିଖ ବ୍ୟସ୍ତ ବଲ୍ଲରୀ ଧରି,
ଦେବଯାନୀ ତଳେ ଗୋଟାଏ ଯତନେ ଚାଙ୍ଗୁଡ଼ା ଭରି । ୧୯ ।

ଯେଉଁ ଯେଉଁ ପୁଷ୍ପେ ଦେବଯାନୀ କରେ ବେଶି ଆଦର,
ସେହି ସେହି ପୁଷ୍ପ ତୋଳି ଆଣେ କଚନୋହି କାତର । ୨୦ ।

ମାଳା ଗୁନ୍ଥି ଯତ୍ନେ ଦେବଯାନୀ ଦିଏ ଗଭାରେ ବାନ୍ଧି,
ସତେକି କନ୍ଦର୍ପ ଜାଲ ବିସ୍ତାରିଛି ଦେବାକୁ ଫାନ୍ଦି । ୨୧ ।

ଶଶୀ ମୁଖୀହସି ପଚାରେ କଚକୁ ଶୋଭା ଉପମା,
ସୁଷମାକୁ ସମା-ନହେବେ କେ ବାମା ନାହିଁ ଉପମା । ୨୨ ।

ହସି ଭାଷି ଦିଏ କଚ ଏ ବାଣୀ କି ପାଣିକି ଧରି,
ପ୍ରଫୁଲ୍ଲ ହୃଦୟେ ନାଚି ବୁଲି ଆସେ ଋଷି କୁମାରୀ । ୨୩ ।

ଗୋରୁ ନେଇ କେବେ ଯାଇଥିଲେ କଚ ବିଳମ୍ବ ଦେଖି,
ପଥଚାହିଁ ଦେବଯାନୀ ବସିଥାଏ ହୋଇଣ ଦୁଃଖୀ । ୨୪ ।



କଚ ବସିଥାଏ ଆଶ୍ରମ ଉଦ୍ୟାନ ମଣ୍ଡପ ପରେ,
ଚନ୍ଦ୍ରାଲୋକ ତଳେ ନିଶାର୍ଦ୍ଧେ ଏକାନ୍ତେ ଯୋଗଧ୍ୟାନରେ।୨୫।

ଲୁଚି ବସିଥାଏ ଦେବଯାନୀ କରେ ସୁମନଧରି,
ଧ୍ୟାନ ଭଗ୍ନ ହେଲେ ପୁଷ୍ପାଞ୍ଜଳି ଦିଏ ଅର୍ଚ୍ଚନା କରି।୨୬।

ମନେ ମନେ ତାର ସଜାଡ଼ି ଥାଏ ସେ କଳ୍ପନା ଶେଯ,
ଭବିଷ୍ୟତେ ଯହିଁ କଚ କର ଧରି ତେଜିବ ଲାଜ।୨୭।

ମାତ୍ର କଚ ହୃଦେ ନ ଥାଏ ସେପରି ତିଳେ ଭାବନା,
ଭଗ୍ନୀରୂପେ ଦେବଯାନୀ ସାଥେ ତାଙ୍କ ନିତ୍ୟ ଖେଳନା।୨୮।

ମନ୍ତ୍ରର ସାଧନ ଶରୀର ପାତନ ବେନିରୁ ଏକ,
ସ୍ୱାଗତ କରିଛି ଦେବ ହିତେ ଯେଉଁ କଚ ବିବେକ।୨୯।

କାମନା ବାସନା ରୂପ ଅରଚନା ଛଳନାତାର,
କଳନା କିପରି କରି ପାରିବ ସେ କିଶୋରୀ ସାର।୩୦।

ଅସୁରେ ଜାଣିଲେ କଚ ଆଗମନ ଗୁପ୍ତ ରହସ୍ୟ,
ମୃତସଞ୍ଜୀବନୀ ମନ୍ତ୍ରର ହରଣ ହୃଦ ଉଦ୍ଦେଶ୍ୟ।୩୧।

କଚ ଦେବଙ୍କର ନିଧନ ଉପାୟ ସୁଯୋଗ ଖୋଜି,
ଜଗି ବୁଲୁଥାନ୍ତି ଯାତୁଧାନେ କ୍ଷୁଧା ତୃଷା ବରଜି।୩୨।

ଦୈବ ଯୋଗେ ଥରେ ଆସିଲା ସୁଯୋଗ ସମୟ ଭାସି,
ଦେଖାଯାଉ ଆଜି ଏ ସୁଯୋଗେ କିଏ ହେଉଛି ଖୁସୀ।୩୩।

ଗୋରୁପଲ ସାଥେ ଅରଣ୍ୟରେ କଚ ଅସୁରେ ଦେଖି,
ପାଞ୍ଚ ସାତ ମିଳି ଏକା ନିଶ୍ୱାସକେ  ନେଲେ ଯେ ଟେକି।୩୪।

ପଥରରେ ପିଟି ମାରି ଦେଲେ ପୋଡ଼ି ପାଉଁଶ ଧରି,
ଭସ୍ମ ରାଶି ମଦ୍ୟସାଥେ ଗୋଳି ଆଣି ଯତନ କରି।୩୫।

କୌଶଳେ ସେମଦ୍ୟ ଶୁକ୍ରମୁନିଙ୍କୁ ସେ ପିଆଇ ଦେଇ,
ଯୋଜନା ସଫଳ ହେଲା ବୋଲି ହର୍ଷେ ମାତିଲେ ଯାଇ।୩୬।

ଦିବା ଅବସାନ ହେଲା ପକ୍ଷୀଗଣେ ଆସନ୍ତି ଫେରି,
ରବି ରଥ ଚକ୍ର ଛୁଇଁଲାଣି ଅସ୍ତ ଗିରି ଶିଖରୀ।୩୭।



ପୂର୍ବାଶା ସୁନ୍ଦରୀ ଭାଲେ ଶ୍ୱେତ ଟୀକା ପରାଯେ଼ ଶଶି,
ଝଲସି ଚୌଦିଗେ ବୁଣି ଦେଲେ ସ୍ୱଚ୍ଛ ଆଲୋକ ରାଶି ।୩୮।

ଫେରି ଆସୁଥାନ୍ତି ଗୋରୁପଲ ଦୁଃଖେ ଗଡ଼ାଇ ଲୁହ,
ରକ୍ଷକ ନଥିବା ରାଜ୍ୟ ବାସୀଙ୍କର ଉଠେକି କୋହ ।୩୯।

ଦେବଯାନୀ ଏଣେ ଜଗି ବସିଥାନ୍ତି ପଥକୁ ଚାହିଁ,
ଗୋରୁପଲ ପଛେ କଚ କାହିଁ ଆଜି ଦିଶୁତ ନାହିଁ ।୪୦।

ବିଳମ୍ବିତ ଏତେ ହୁଏ ନାହିଁ କେବେ କି ହେଲା ଆଜି ?
ଚହଲାଇ ଦିଏ ହୃଦୟକୁ ଏହି ପ୍ରଶ୍ନ ରାଜି ।୪୧।

ଅଶ୍ରୁଳ ବଦନେ ଗୋରୁପଲ ଗଲେ ତାହାଙ୍କୁ ଘେରି,
କଚ ଆଉ ନାହିଁ ଅରଣ୍ୟକୁ ଚାହିଁ କହିଲେ ଠାରି ।୪୨।

ବିହଙ୍ଗ-କରୁଣ -କାକଳି ସେ କାଳେ ଦେଲା ଜଣାଇ,
ଦେବଯାନୀ ତମ କଚ ଆଉ ନାହିଁ ଆଉତ ନାହିଁ ।୪୩।

କରୁଣ ମୂର୍ଚ୍ଛନା ତାଳେ ତାଳେ ହୃଦ ଗଲା କିଙ୍ଗିଟି,
ଅଶ୍ରୁର ଝରଣା ବହିଗଲା ଧୋଇ ଆଶ୍ରମ ମାଟି ।୪୪।

ସେ ଝରଣା ସ୍ରୋତ ପରଶିଲା ଶୁକ୍ର ମୁନିଙ୍କ ପାଦ,
ବାତ୍ସଲ୍ୟ ପ୍ରେମରେ ମହା ମୁନି ହୋଇଗଲେ ଗଦଗଦ ।୪୫।

ଦେବଯାନୀ କେଶ ଆଉଁଷି ଭାଷିଲେ କାହିଁକି ଭୟ,
ମରିଥିଲେ କଚ ବଞ୍ଚାଇ ଦେବି ମୁଁ ନାହିଁ ସନ୍ଦେହ ।୪୬।

ରହ କ୍ଷଣେ ଧ୍ୟାନ ବଳେ ଦେଖି ଜାଣେ ଅଛି ସେ କାହିଁ ?
କହି ମୁନି ମୌନେ ରହିଲେ ନିଶ୍ଚଳେ ଏକାଗ୍ର ହୋଇ ।୪୭।

ତ୍ରିକାଳ ଦର୍ଶନ - ଦର୍ପଣ ଧ୍ୟାନରେ ଗଲାକି ଖୋଲି,
ମୁହୂର୍ତ୍ତକେ ମୁନି ବିଶ୍ୱ ବ୍ରହ୍ମାଣ୍ଡକୁ ଆସିଲେ ବୁଲି ।୪୮।

କାହିଁ ଅଛି କଚ ଦିଶୁନାହିଁ ମହା ବିସ୍ମିତ ହୋଇ,
ନିକ୍ଷେପିଲେ ଅନ୍ତଦୃଷ୍ଟି ସ୍ୱଶରୀରେ ଯୋଗରେ ତହିଁ ।୪୯।

କି ଅଦ୍ଭୁତ ଦୃଶ୍ୟ ଦେଖୁଛନ୍ତି ମୁନି ବିସ୍ମିତ ନିଜେ,
ନିଜରକ୍ତ କଣିକାରେ କଚ ଭସ୍ମ ଅଂଶ ବିରାଜେ ।୫୦।



କି ହେଲା କି ହେଲା କିପରି ସମ୍ଭବ ହେଲା ଏପରି ?
ଅସୁରଙ୍କ କାଣ୍ଡ ଜାଣିଲେ ପ୍ରଚଣ୍ଡ ସମାଧି ଧରି।୫୧।

ପ୍ରକୃତିସ୍ଥ ହୋଇ ଭାଷିଲେ ସକଳ ବୃତ୍ତାନ୍ତ ଯହୁଁ,
ଶୁଣୁ ଶୁଣୁ ଦେବଯାନୀ ମୂର୍ଚ୍ଛାଗତ ହୁଅନ୍ତି ତହୁଁ।୫୨।

ନପାଇବି ଯେବେ କଚ ଦରଶନ, ଜୀବନ ହାରି,
ମୃତ୍ୟୁ ଲୋକେ ତାଙ୍କ ସେବାରେ ଲାଗିବି ସଙ୍ଗିନୀ ପରି।୫୩।

ଦିଅହେ ବିଦାୟ ଜନକ ! ଜୀବନ ଅଧ୍ୟାୟ ବୁଜି,
କଚ ସହଯାତ୍ରୀ ହେବି ମରଣର -ଚରଣ ଭଜି।୫୪।

ପିତୃ ହୃଦୟର ସ୍ନେହପାଇଁ ନାହିଁ ଭାବକି ଭାଷା,
ସନ୍ତାନର ସୁଖ ପାଇଁ ସବୁ ସାଧ୍ୟ କରେ ସହସା।୫୫।

ବିଷାଦ ଗମ୍ଭୀର ବଚନ ଭାଷିଲେ ଋଷି ଯେ ତହିଁ,
ମୃତ ସଞ୍ଜୀବନୀ ପର ହସ୍ତଗତ ହେବ ତୋ ପାଇଁ।୫୬।

ଏତେ ତପସ୍ୟାର ଏତେ ସାଧନାର ଦୁଷ୍ପ୍ରାପ୍ୟ ଫଳ,
ଭସାଇ ନେବାକୁ ଉଦ୍ୟତ ବାତ୍ସଲ୍ୟ ମମତା-ଜଳ।୫୭।

ତୋ ପାଇଁ ମା' ସବୁ ତ୍ୟାଗ ମୁଁ ସ୍ୱୀକାର ପାରିବି କରି,
ଶିଖାଇବି ମନ୍ତ୍ର କଚକୁ ଜଠରୁ ଆସିବ ଫେରି।୫୮।

ଜୀବନ୍ୟାସ ଦେଲେ କଚକୁ ଜଠରେ ମୁନି ପୁଙ୍ଗବ,
ମୃତ ସଞ୍ଜୀବନୀ ମନ୍ତ୍ର ଶିଖାଇଲେ ଆଚରି ଯୋଗ।୫୯।

ଯୋଗବଳେ ମୁନି ମୁଖସ୍ଥ ପରୀକ୍ଷା ଶିଷ୍ୟଠୁଁ ନେଇ,
ଆଦେଶିଲେ କଚ ! ଗର୍ଭ ଚିରି ଆସି ଦିଅ ବଞ୍ଚାଇ।୬୦।

ଶୁକ୍ରଙ୍କ ଆଦେଶେ ବାହାରିଲେ କଚ ଶରୀର ପାଇ,
ବାହାରକୁ ଆସି ଋଷିଙ୍କୁ ସହସା ଦେଲେ ବଞ୍ଚାଇ।୬୧।

ଉଚ୍ଛୁଳି ଉଠିଲା ଦେବଯାନୀ ଗୁଢ ଆନନ୍ଦ ଜଳ,
ଭାସିଗଲା ଋଷି ବାର ବରଷର ତପସ୍ୟା ଫଳ।୬୨।

ଯେଉଁ ଭରସାରେ ଅସୁରଙ୍କ ମନେ ନଥିଲା ଡ଼ର,
ନିଜ କର୍ମ ଦୋଷେ ନିଜ ଭାଗ୍ୟ ନାଶେ ସାଜିଲେ ଚୋର।୬୩।



ପ୍ରଥମେ ବିବେକ ମରେ ଯେତେବେଳେ ବିନାଶ ଗ୍ରାସେ,
ପରେ ପରେ ପ୍ରାଣୀ ନାଶ ହୁଏ ଜାଣି ଆପଣା ଦୋଷେ।୬୪।

ମୃତ ସଞ୍ଜୀବନୀ ମନ୍ତ୍ର ହୋଇଗଲା ଅପହରଣ,
ଋଷି ଦେଲେ ଶାପ ଏଣିକି ମନ୍ତ୍ର ହେଉ ଅକାରଣ।୬୫।

ମୃତ ସଞ୍ଜୀବନୀ ମନ୍ତ୍ର ଗଲେ ପଛେ ଚୁଲିକି ଯାଉ,
ଦେବଯାନୀ କହେ କଚ ମୋର ମୋର ପାଖରେ ଥାଉ।୬୬।

କାଳ ପରିହାସ ବୁଝିବାକୁ କାର ଅଛି ଶକତି ?
ମହାବଳୀଠାରୁ ବଳୀୟାନ କାଳ କରାଳ ଗତି।୬୭।

ଭାଗ୍ୟ ଉପହାସ ଫଗୁ ବୋଳିଲାକି ହେଲା ବିଷମ,
ବିଦାୟ ମାଗିଲେ କଚ ଯିବା ପାଇଁ ଛାଡ଼ି ଆଶ୍ରମ।୬୮।

ଦେବଯାନୀ ଶତ ନିବେଦନ ବ୍ୟର୍ଥ କଚଙ୍କ ପାଶେ,
ପବନକୁ ଯାହା ଧରିବା ବିଚାର ସୁଦୃଢ ଫାଶେ।୬୯।

ଯେଉଁ ଆଶା ନେଇ ଆସିଥିଲେ କଚ କରି ପୂରଣ,
ଲେଉଟିଲେ ଛୁଇଁ ଶୁକ୍ରାଚାର୍ଯ୍ୟଙ୍କର ଦୁଇ ଚରଣ।୭୦।

କଚ ଦେଇଥିବା ଉପହାର ପାଟ ଶାଢ଼ୀକୁ ଚିରି,
ଦେବାପାଇଁ ମନେ ଭାବିଲେ ସହସା ଋଷି କୁମାରୀ।୭୧।

ବେଶ ଭୂଷା ପ୍ରିୟ ସହଜେ ଲଳନା ପ୍ରବୃତ୍ତି ବାଧା,
ଦେବାରୁ ସେ କାର୍ଯ୍ୟେ ଜାତ ହେଲା ପୁଣି ମନରେ ଦ୍ୱିଧା।୭୨।

କଚଙ୍କର ସ୍ମୃତି ଭୁଲି ହେବ ନାହିଁ ମନରୁ କେବେ,
କୋମଳ ବିନୟ ବଚନ ସରଳ ସ୍ୱଭାବ ଭାବେ।୭୩।

ତ୍ୟାଗ ବୀର ସିଏ କର୍ମ ବୀର ସିଏ ଅଟଳ ମେରୁ,
ଅନ୍ୟ ପୁରୁଷଙ୍କ ପରି ସେ ନୁହଁନ୍ତି ମନରେ ଭୀରୁ।୭୪।

ନାରୀ ରୂପେ ମୁଗ୍ଧ ହୋଇ ଯେ ପୁରୁଷ ପଛରେ ଧାଏଁ,
ନାରୀଠାରୁ କେବେ ଆନ୍ତରିକ ପ୍ରେମ ସିଏ ନ ପାଏ।୭୫।

ଯେ ପୁରୁଷ ନିଜ ଗୁଣେ କିଣି ନିଏ ନାରୀର ମନ,
ସେ ଏକା ସଂସାରେ ପ୍ରୀତି ପାରାବାରେ ପୁରୁଷ ଧନ୍ୟ।୭୬।



କାମୁକ ଲମ୍ପଟ ନୁହନ୍ତିତ କଚ ଆସିବେ ଉଡ଼ି,
ପାଣି କୁଆ ପରି କାମ-ସରିତରେ ଯିବେ ସେ ବୁଡ଼ି।୭୭।

ରାଜହଂସ ସମ ନିର୍ଲିପ୍ତ ସେ ପୂତ ତାଙ୍କ ଶରୀର,
ବାସନା ନୀରକୁ ବରଜି ଦିଅନ୍ତି ସେ ଯୋଗ କ୍ଷୀର।୭୮।

ସୁଦ୍ଧ ଯୋଗ କ୍ଷୀରେ ପୁଷ୍ଟ ତାଙ୍କ ମନ ପ୍ରାଣ ଶରୀର,
ହେମାଗ୍ନିରେ ଶିଝି ଘୃତେ ପରିଣତ ଋଷି ପ୍ରବର।୭୯।

କାମିନୀ କାମନା ବାସନା ପାତ୍ରେ ସେ ଯିବେ କି ବୁଡ଼ି,
ବିଶୁଦ୍ଧ କର୍ପୁର ରହିଅଛି କନା ଯାଇଛି ଉଡ଼ି।୮୦।

ଚେଷ୍ଟା ବଳେ ସବୁ ଅସାଧ୍ୟ ସମ୍ଭବ ସିନା ଏ ଭବେ,
ଉଦ୍‌ଯୋଗୀ ପୁରୁଷ ମରଣକୁ ଜିଣି ପାରଇ ଲବେ।୮୧।

ସେପରି ମଣିଷ କୋଟିକେ ଗୋଟିଏ କଚଙ୍କ ପରି,
କେଉଁ ଇତିହାସ ସାହିତ୍ୟ ପାରିବ ତାଙ୍କୁ ପାଶୋରି।୮୨।

କଚଙ୍କୁ ସୁମରି ଭାଗ୍ୟକୁ ଆଦରି କାଟିଲେ କାଳ,
ହତାଶା ଜୀବନେ ସାନ୍ତ୍ୱନା କେବଳ ମାତ୍ର ସମ୍ବଳ।୮୩।

ବୁଡ଼ିମଲା ଲୋକ କୁଟାଖିଅ ଆଶ୍ରା କରିବା ପରି,
ଦେବଯାନୀ ମନ ବସିଥାଏ ଚଢି ସାନ୍ତ୍ୱନା -ତରୀ।୮୪।

ବୃଷପର୍ବାଙ୍କର ରାଜ୍ୟରେ ଆସିଲା ଉତ୍ସବ ଦିନ,
ହୀରାନୀଳା ମୋତି ମାଣିକ୍ୟେ ନବର ହୋଇ ମଣ୍ଡନ।୮୫।

ପ୍ରାସାଦ ସକଳ ସ୍ୱଚ୍ଛ ସତ ଦଳ ପାଖୁଡ଼ା ପରି,
ନୟନ-ଭ୍ରମର ଲାଖି ରହିଯିବ ଦିବା ଶର୍ବରୀ।୮୬।

ପ୍ରାସାଦ କମଳେ ଶର୍ମିଷ୍ଠା ସେ ବରାଟକ ପରାୟେ,
ରାଜଧାନୀ - ସରୋବରେ ସଭିଙ୍କର ମନକୁ ମୋହେ।୮୭।

ରାଜକେମା ସେତ ଯୁବତୀ ରତନ ଶାସ୍ତ୍ରେ ନିପୁଣା,
କାଦମ୍ବିନୀ କୋଳେ ଖେଳୁଛି ସତେକି ସେ ବିଚକ୍ଷଣା।୮୮।

ଡ଼କାଇଛି ଦେବଯାନୀକୁ ସେ ଜଳକ୍ରୀଡ଼ା ମାନସେ,
ସହଚରୀଗଣ ସଜାଇ ଅଛନ୍ତି ଅତି ସୁବେଶେ।୮୯।



ଯଥା କାଳେ ଆସି ମିଳିଗଲେ ଋଷି କୁମାରୀ ତହିଁ,
ସରୋବର କୂଳେ ଗଲେ ଆଳି ଦଳ ବେଷ୍ଟିତ ହୋଇ।୯୦।

ଦୋନଳୀ ବନ୍ଧୁକ ଧରିକି ସେ କାମଦେବ ବାହାର,
ଯୁବ-ହରିଣର ଶିକାରରେ ଆଶା ବଳିଛି ତାର।୯୧।

କିଏ ସେ ନାଗର ଜାଗରରେ ଉଜାଗରେ ଶଙ୍କର,
ସେବିଥିବ ହେବ ଏରୂପବତୀଙ୍କ ପଦେ କିଙ୍କର।୯୨।

ଦୁହିଁଙ୍କୁ ଦୁହେଁତ ଊଣା ନୁହନ୍ତି କେ ରୂପ ଗୁଣରେ,
ରାଜକେମା ଗୁରୁକନ୍ୟା କୁଳଶୀଳ ଅଭିମାନରେ।୯୩।

ବାପାଙ୍କର ବଡ଼ ପଣିଆରେ ଦୁହେଁ ଥିଲେ ଗର୍ବିତ,
ନିଜ ନିଜ ବଡ଼ପଣ ବଖାଣିବା ଯେଣୁ ସୁଶୃତ।୯୪।

ନବରରୁ ଦୂରେ ବନ ଉପକଣ୍ଠେ ସରସୀ ତୀରେ,
ମିଳିଲେ ସତେକି ମରାଳୀ ପଙ୍କତି ହରଷ ଭରେ।୯୫।

ଜଳ କ୍ରୀଡ଼ାରତ ହେଲେ ବସ୍ତ୍ରମାନ ଉପରେ ରଖି,
ସରସୀର ଜଳ ଉଚ୍ଛୁଳି ଉଠିଲା ହୋଇକି ସୁଖୀ।୯୬।

ଜଳ କଣିକାରେ ଊର୍ଦ୍ଧ୍ୱଭାଗ ହେଲା ପରିପୁରିତ,
ମୁକ୍ତା କଣା ତହିଁ ବୁଣିଲା କି ବିହି କରି ତ୍ୱରିତ।୯୭।

ସନ୍ତରଣ ପ୍ରତିଯୋଗିତାର ଆଶା ମନରେ ଧରି,
ସରୋବର ସ୍ଥିତ କମଳ ପରଶ ନିଶାଣ କରି।୯୮।

ସନ୍ତରଣ କଲେ ଦେବଯାନୀ ରାଜକେମା ଝଟତି,
ସୁବର୍ଣ୍ଣ ତରୀରେ କନ୍ଦର୍ପ କି ସତେ କରୁଛି ଗତି।୯୯।

ଅତି ସହଜରେ ଅତିକ୍ରମି ଗଲେ ଗୁରୁ କୁମାରୀ,
ଉତ୍ପଳ ଚୌଦିଗେ ଉତ୍ପଳ ନୟନୀ ସନ୍ତରେ ଘୁରି।୧୦୦।

ଯେକାଳେ ଶର୍ମିଷ୍ଠା ଉପଗତହେଲେ ପାଶେତାଙ୍କର,
କମଳକୁ ଛୁଇଁ ଦେବଯାନୀ ତହୁଁ ଫେରେ ସତ୍ୱର।୧୦୧।

ସହସା ସେକାଳେ ଆଶଙ୍କତି ଅତି ଶରୀରେ ପାଇ,
ପୂର୍ବ ବେଗେ ପ୍ରତ୍ୟାବର୍ତ୍ତନେ ସମର୍ଥ ନ ପାରେ ହୋଇ।୧୦୨।



ଶର୍ମିଷ୍ଠା ଆସିଲେ ଅତିକ୍ରମି ଅତି ସହଜେ କୂଳେ,
ଦାସୀଠାରୁ ନେଇ ପିନ୍ଧିଦେଲେ ରଙ୍ଗ ପାଟ ଦୁକୁଳେ।୧୦୩।

ଦେବଯାନୀ ହାରିଯିବାରୁ ଦାସୀଏ ଉଠିଲେ ହସି,
ଲାଜ ଅପମାନେ ରକ୍ତିମ ବଦନେ କ୍ରୋଧ ପ୍ରକାଶି।୧୦୪।

ଭାଷେ ଋଷି ସୁତା ବୃଥା ଗରବିତା ହେଉଛୁ ସିନା,
ତୋପାଇଁ ମୁଁ ତହିଁ ଜଗି ପରିଶେଷେ ହାରିଲି କିନା।୧୦୫।

ଇଚ୍ଛା କରିଥିଲେ ବହୁ ଆଗୁଆସି ଥାଆନ୍ତି କୂଳେ,
ବୃଥା ଗର୍ବ କରୁଅଛୁ ଲାଜ ତୋତେ ନାହିଁ ଲୋଡିଲେ।୧୦୬।

ଚିଡ଼ିବା ଲୋକର ଛିଡ଼ା ଢଙ୍ଗ ସବୁ ଦେଖିଣ ଲୋକେ,
ସହଜେ ଚିଡ଼ାନ୍ତି ଅଧିକୁ ଅଧିକ ହାସ୍ୟ କୌତୁକେ।୧୦୭।

ସଖୀଗଣେ କଲେ ତହିଁ ସେ କଥାର ପୁନରାବୃତ୍ତି,
ମଝିରେ ମଝିରେ ଶର୍ମିଷ୍ଠା ଯେ ଦେଉଥିଲେ ଆହୁତି।୧୦୮।

ଦେବଯାନୀ କ୍ରୋଧେ ଜଳି ଉଠୁଥାନ୍ତି ବେଳକୁ ବେଳ,
ଦେଖିଲେ ଶର୍ମିଷ୍ଠା ପିନ୍ଧିଛନ୍ତି ତାଙ୍କ ରଙ୍ଗଦୁକୂଳ।୧୦୯।

ଲଜ୍ଜାନାହିଁ ମୋର ବସ୍ତ୍ରପିନ୍ଧି କହୁ ମୁହଁ ହଲାଇ,
ଦେଏ ମୋ ବସନ ଫୁଲେଇ ହେବୁଯା ଘରେ ଗେହ୍ଲେଇ।୧୧୦।

ରାଜକେମାସେକି ଛାଡ଼ି ଦେବା ପିଲା ଯାଉଛି ଡ଼ରି,
କହିଲା ବଣୁଆଁ ବାବାଜୀ ଝିଅଟୁ ଏଡ଼େ ଛତରୀ।୧୧୧।

ଲାଜନାହିଁ ତୋର ବାପ ଦରବାରେ ମାଗିଲେ ଭିକ,
ଭିକ୍ଷା କରି ତମେ ଚଳି ଆସୁଅଛ କାଳ କାଳକ।୧୧୨।

ମୋ ବାପା ବସିବେ ରତ୍ନସିଂହାସନେ ତୋ ବାପା ତଳେ,
ରତ୍ନପଲଙ୍କରେ ପହୁଡ଼ିଲେ ମୁଁ -ତୁ ଶୋଇବୁ ତଳେ।୧୧୩।

ରାଜପ୍ରାସାଦରେ ପ୍ରାଚୁର୍ଯ୍ୟ କୋଳରେ ମୋର ବିହାର,
ଅରଣ୍ୟ ମଧ୍ୟରେ କୁଡ଼ିଆ ଭିତରେ ତୋ କାରବାର।୧୧୪।

ଦାସୀଗଣେ ପରିହାସ କରି କେତେ ମାରିଲେ ତାଳି,
ତାଳି ନୁହେଁ ସେତ ଶାଣିତ କୁଠାର ଯାଇଛି ଗଳି।୧୧୫।





ସହି ନ ପାରିଣ ଦେବଯାନୀ ଆସେ ଲାକେ ଦଉଡ଼ି,
ଅନୁତାପ କରି ଶର୍ମିଷ୍ଠା ପଛରୁ ଛାଡୁଛି ରଡ଼ି ।୧୧୬।

ରହ ଦେବଯାନୀ ରାଗେ ରୁଷି ମତେ ଯାଆନା ଛାଡ଼ି,
ମାନିଲି ମୁଁ ସବୁ ଦୋଷ ଅଟେ ମୋର ମୁଁ କଳିହୁଡ଼ି ।୧୧୭।

ନ ଜାଣି ଦଉଡ଼େ ଦେବଯାନୀ ଦେଖି ଶର୍ମିଷ୍ଠା ଧାଏଁ,
ମୃଗୁଣୀ ପଛରେ ସତେକି କ୍ଷୁଧିତା ବାଘୁଣୀ ପ୍ରାୟେ ।୧୧୮।

ବହୁ ଦୂର ଧାଇଁ ଦୂରତା କ୍ରମଶଃ ହେଲା ନିକଟ,
ହାରିଯିବ ଜାଣି ଦେବଯାନୀ ମନେ ଜାତ ଶଙ୍କଟ ।୧୧୯।

ଠିଆ ହେବା ମାତ୍ରେ ପାଖେ ପହଞ୍ଚିଲେ ଶର୍ମିଷ୍ଠା ଯାଇଁ,
ହାତ ଧରି କେତେ କହିଲେ ବଚନ ବିନୟ ହୋଇ ।୧୨୦।

ପିଲା ଦିନୁ  କେତେ କଳି ତକରାଳ କରିନା ଆମେ,
ଆଜି କିଆଁ ଏତେ ଅଭିମାନେ ଛାଡ଼ି ଯାଉଛ ତୁମେ ? ।୧୨୧।

ସବୁ ଭୁଲ୍ ମୋର ଆସ ଫେରିଯିବା ନବରେ ଆସ,
ତଥାପି ଯାନୀର ମୁଖେ ନ ଦିଶିଲା ସ୍ନେହର ହସ ।୧୨୨।

ନିଜ ଅପମାନ ପାରିଥାନ୍ତେ ସେତ ମନରୁ ଭୁଲି,
ପିତୃ ଅପମାନେ କଇଁ କଇଁ କୋହ ଉଠିଲା ଫୁଲି ।୧୨୩।

ମୋ ବାପାଙ୍କ ତପୋବଳେ ତୁମ ବାପା ବୋଲାନ୍ତି ରାଜା,
ନୋହିଲେ ଦେବତାଗଣେ ଦେଉଥାନ୍ତେ ତୁମକୁ ସଜା ।୧୨୪।

ଜୀବନେ ଆଉ ମୋ ସଦ୍‌ଭାବ ତୋ ସାଥେ ରହିବ ନାହିଁ,
ଗର୍ବ ତୋ ଯେବେ ମୁଁ ନଭାଙ୍ଗିଛି ନୁହେଁ ଋଷି ତନୟୀ ।୧୨୫।

କହୁ କହୁ ଅକସ୍ମାତ୍ ଗଲା ପାଦତଳକୁ ଖସି,
ତୃଣ ଗୁଳ୍ମ ଆଚ୍ଛାଦିତ ଜରାଜୀର୍ଣ୍ଣ କୂପରେ ପଶି ।୧୨୬।

ବିକଳେ ଚିତ୍କାର ଛାଡ଼େ ଦେବଯାନୀ କୂପ ଭିତରେ,
ଉଦ୍ଧାର ଉପାୟ ନପାଇ ଶର୍ମିଷ୍ଠା ଫେରେ ନବରେ ।୧୨୭।

ପ୍ରତିଶୋଧ ପାଇଁ ଦେଉଥିଲା ଯିଏ ଧମକ ଏବେ,
ପ୍ରାଣରକ୍ଷା ପାଇଁ ତା ଡ଼ାକତ ଶୁଣୁନାହିଁ କେ ଲବେ ।୧୨୮।





ଜୀର୍ଣ୍ଣ କୂପେ ପଡ଼ି କାନ୍ଦି କାନ୍ଦି ଭାବେ ଋଷି କୁମାରୀ,
ଅନ୍ଧାର-ଶୀତଳ ଜଳସ୍ପର୍ଶେ ପ୍ରାଣ ଯିବ ବାହାରି ।୧୨୯।

ନିର୍ଜନ ଅରଣ୍ୟେ ଜୀର୍ଣ୍ଣ କୂପେ ଦେଲା ଶର୍ମିଷ୍ଠା ପେଲି,
କେହି ଜାଣିବେନି ମରଣ ଦୁଆରେ ଯିବି ମୁଁ ଚାଲି ।୧୩୦।

ବିଧାତା କପାଳେ ଲେଖିଥିଲା ମୋର ଏହି ଦୁର୍ଦ୍ଦଶା,
ଆଦ୍ୟ ଯୌବନରୁ ଯମପୁରେ ଯାଇଁ ବାନ୍ଧିବି ବସା ।୧୩୧।

କେତେ ଆଶା କେତେ ସ୍ୱପ୍ନ ଗଲା ସବୁ ପାଣିରେ ମିଶି,
କାଳର କରାଳ ସ୍ରୋତେ ମୋ ଜୀବନ ଯାଉଛି ଭାସି ।୧୩୨।

ମୃଗୟା ବିନୋଦେ ହସ୍ତିନା ନରେଶ ଯଯାତି ବନେ,
ଧନୁର୍ବାଣ କରେ ଧରି ବୁଲୁଥାନ୍ତି ସେହି କାନନେ ।୧୩୩।

ବୁଲି ବୁଲି ବନେ ଶିକାର ପାଇବା ତେଣିକି ଥାଉ,
ତୃଷାତୁର ଅତି ଚାଲିବାକୁ ବଳ ପାଉନି ଆଉ ।୧୩୪।

ଜଳ ସନ୍ଧାନରେ ବୁଲନ୍ତି ନୃପତି ମୃଗୟା ଛାଡ଼ି,
ସହସା ଶୁଭିଲା ରକ୍ଷା କର ରକ୍ଷା କର ଏ ରଡ଼ି ।୧୩୫।

କର୍ଣ୍ଣ ଡେରି ଶୁଣି ଜାଣିଲେ ରମଣୀ କଣ୍ଠର ଧ୍ୱନି,
ଶବ୍ଦ ଅନୁସରି ପହଞ୍ଚିଲେ ପାଶେ ସେ ନରମଣି ।୧୩୬।

ଜୀର୍ଣ୍ଣ କୂପ ତଳୁ ଶୁଭିଲା ଅବଳା କରୁଣ ସ୍ୱର,
କିଏ କାହିଁ ଅଛ ରକ୍ଷାକର ଆସି ଉଦ୍ଧାର କର ।୧୩୭।

ପୁଛିଲେ ଯଯାତି କୂପ ମଧ୍ୟେ କିଏ କରେ କ୍ରନ୍ଦନ ?
ଉତ୍ତର ମିଳିଲା ଋଷି ସୁତା ଦେବଯାନୀ ମୋ ନାମ ।୧୩୮।

ମହାତପା ଶୁକ୍ର ଅସୁରଙ୍କ ଗୁରୁ ଜନକ ମୋର,
ଆପଣ କିଏ ସେ ? ଦୟାକରି ବାରେ କର ଉଦ୍ଧାର ।୧୩୯।

ଯଯାତିଙ୍କ ତୃଷା ଶିକାରର ନିଶା ଗଲାତ ଉଡ଼ି,
ଧନୁର୍ଗୁଣେ ଶର ଯୋଖି ମନ୍ତ୍ର ପଢି ଦେଲେ ସେ ଛାଡ଼ି ।୧୪୦।

ଶର ଯାଇ କୂପେ ଶତଦଳ ରୂପେ -ଉଠଇ ଧୀରେ,
ଶରପରେ ଥାଇ ଦେବଯାନୀ ଆସି ହେଲେ ଉପରେ ।୧୪୧।



ଦେବଯାନୀ ରୂପେ ମୋହିତ ବିସ୍ମିତ ଚକିତ ହୋଇ,
ଯଯାତି ଆଖିକୁ ବିଶ୍ୱାସତ କରି ପାରନ୍ତି ନାହିଁ ।୧୪୨।

ନୟନେ କଟାକ୍ଷ ହାଣି ଦେବଯାନୀ ପୁଚ୍ଛଇ ଧୀରେ,
ମହାଭାଗ ତୁମ ପରିଚୟ ଦୀନା ଜାଣିକି ପାରେ ?୧୪୩।

ହସ୍ତିନା ନୃପତି ନାମ ମୋ ଯଯାତି ପିତା -ନହୁଷ,
ଶିକାର ନିମନ୍ତେ, ଅରଣ୍ୟ ଭ୍ରମଣେ ବଳିଲା ଆଶ ।୧୪୪।

ହାତ ବଢାଇଲେ ଦେବଯାନୀ ହେବାପାଇଁ ବାହାର,
ହାତ ଧରି ଧୀରେ ଉଠାଇ ଆଣିଲେ ରାଜକୁମାର ।୧୪୫।

କର ପରଶରେ ପରସ୍ପରେ ହେଲା ରୋମାଞ୍ଚଜାତ,
ନୟନେ ନୟନ ରହିଗଲା ଲାଖି ଅଧରେ ସ୍ମିତ ।୧୪୬।

ଭାଷିଲେ ଯଯାତି ନଥିଲେ ଆପତ୍ତି ଆଶ୍ରମେ ଯାଇ,
ଛାଡ଼ି ଆସିଥାନ୍ତି ମହାତପା ମୁନି ଆଶିଷ ପାଇ ।୧୪୭।

ଦେବଯାନୀ କହେ ଛାଡ଼ି ଆସିବାର କାରଣ ନାହିଁ,
ପ୍ରଥମ କରି ମୋ ହାତ ଧରିଅଛ ହେ ନରସାଇଁ ।୧୪୮।

ଆଜିଠାରୁ ଏହିମନ ପ୍ରାଣ ସବୁ ଅଟେ ତୁମ୍ଭର,
କାୟାସାଥେ ଛାୟା ପରି ରହିବାକୁ କରୁଣା କର ।୧୪୯।

କରୁଣା କରିଯା କରିଛ ପ୍ରକାଶ ମୋ ପାଳନୀୟ,
ରତ୍ନହାର ସମ ଗଳା ମାଳା କରିଥିବି ନିଶ୍ଚୟ ।୧୫୦।

ଦେବଯାନୀ ହୃଦ ପୁଲକି ଉଠିଲା ସେବାଣୀ ଶୁଣି,
ମରଣ ଦୁଆରେ ଥିବା ଲୋକ ହୁଏ ହସ୍ତିନା ରାଣୀ ।୧୫୧।

କାଳର ବିଚିତ୍ର ଗତି ସ୍ରୋତ କିଏ ପାରିବ କଳି ?
କ୍ଷଣିକେ ହସାଏ କ୍ଷଣିକେ କନ୍ଦାଏ ଦରପଦଳି ।୧୫୨।

ମହାମୁନି ଶୁକ୍ର ରାଜା ବୃଷପର୍ବା ବାରତା ପାଇ,
ଭୃତ୍ୟଗଣ ସାଥେ କୂପ ସମୀପକୁ ଆସିଲେ ଧାଇଁ ।୧୫୩।

ରଥରୁ ଓହ୍ଲାଇ ଆସନ୍ତେ ମୁନିଙ୍କୁ ପ୍ରଣାମ କରି,
ବିନୟେ ଯଯାତି ଉଭା ହେଲେ ଅଧୋବଦନ କରି ।୧୫୪।





ପିତାଙ୍କୁ ପ୍ରଣମି ଦେବଯାନୀ ହୃଦ ବନ୍ଧ ତୁଟିଲା,
ଅଶ୍ରୁର -ଝରଣା ନୟନର କୋଣ ଭେଦି ଛୁଟିଲା ।୧୫୫।

ହସ୍ତିନାସମ୍ରାଟ ଯଯାତି ନଥିଲେ ଯାଆନ୍ତା ପ୍ରାଣ,
କୂପ ମଧ୍ୟୁଁ ଅକସ୍ମାତ ଆସି କଲେ ସେ ପରିତ୍ରାଣ ।୧୫୬।

ମରଣ ମୁହଁରୁ ରଖିଲେ ଯେଣୁ ସେ ଜୀବନ ମୋର,
ମନପ୍ରାଣ ସବୁ ସମରପି ଦେଲି ତାଙ୍କ ପୟର ।୧୫୭।

ଶୁଣି ଶୁକ୍ରାଚାର୍ଯ୍ୟ ସସ୍ମିତ ବଦନେ ଦେଲେ ଆଶିଷ,
ଯୋଗ୍ୟ ପତି ନିର୍ବାଚନ କରି ଦେଲୁ ଶୁଭ ସନ୍ଦେଶ ।୧୫୮।

ବୃଷପର୍ବା ରାଜା ଭାଷିଲେ ଆସନ୍ତୁ ନବରେ ଯିବା,
ଆଡ଼ମ୍ବର ସହକାରେ ବିଭାବିଧି ଶେଷ କରିବା ।୧୫୯।

ଦେବଯାନୀ ହେଲେ ଅସମ୍ମତା ତହିଁ ଯିବାର ପାଇଁ,
କାରଣ ପୁଛିଲେ ଶୁକ୍ରାଚାର୍ଯ୍ୟ କିଛି ବିସ୍ମିତ ହୋଇ ।୧୬୦।

କୋହ ରୋକି ରୋକି ଛେପ ଢୋକି ଢୋକି କହିଲା ଝିଅ,
ଶର୍ମିଷ୍ଠା ଦେଇଛି ମୋତେ ଅପମାନ ଅତି ଦୁଃସହ ।୧୬୧।

ମୋତେ ଯା କହିଲା ପାରିଥାନ୍ତି ଅବା ଦୁଃଖରେ ସହି,
ଆପଣଙ୍କୁ ଦେବା ଅପମାନ ମୁଖେ ନପାରେ କହି ।୧୬୨।

କହିଲା "ବାପାତୋ ବଣୁଆ ବାବାଜୀ ଭିକାରୀଟାଏ,
ଭିକ୍ଷା ନେଇ ଆମଠାରୁ ସେ ତୁମକୁ ନିତି ଚଳାଏ ।୧୬୩।

ମୋ ବାପା ବସିବେ ରତ୍ନସିଂହାସନେ ତୋ ବାପା ତଳେ,
ରାଜପ୍ରାସାଦରେ ବିହାର ମୋହର ତୁ ତରୁତଳେ" ।୧୬୪।

ବାରୁଦ ଗଦାରେ ଲାଗିଗଲା କିବା ପ୍ରଚଣ୍ଡ ନିଆଁ,
ଶୁକ୍ରଙ୍କର କୋପ ଦେଖି ବୃଷପର୍ବା ହେଲେ ଛାନିଆଁ ।୧୬୫।

ପାଦ ତଳେ ପଡ଼ି କହିଲେ ବିନୟ ବଚନ ମାନ,
କ୍ରୋଧ ସମ୍ବରଣ କରନ୍ତୁ ହେ ! ଗୁରୁ ହେ ତପୋଧନ !୧୬୬।

ପିଲାଲୋକ ସେତ ଦେବଯାନୀ ସାଥି ଝିଅଟା ପରି,
ପରିଣତି କଥା ନଭାବି ଦେଇଛି ବିଷ ଉଦ୍‌ଗାରି ।୧୬୭।





ଯେଉଁ ଦଣ୍ଡେ ତାକୁ ଦଣ୍ଡିତା କରିବେ ଭୋଗିବ ସିଏ,
ଦୋଷ ଅନୁରୂପେ ଦଣ୍ଡର ବିଧାନ କରନ୍ତୁ ଛାଏଁ ।୧୬୮।

ଯାହା ପାଶେ ଦୋଷ କରିଛି ସେ ଦଣ୍ଡ ଦେବ ବିଚାରି,
ତେବେ ବା କ୍ରୋଧ ମୋ ଶାନ୍ତ ହୋଇପାରେ ପାରେ ମୁଁ ଫେରି ।୧୬୯।

ଦେବଯାନୀ ହାତେ ଆସିଲା ଏଥର ଶର୍ମିଷ୍ଠା ଚୁଟୀ,
ପୂର୍ବ ପ୍ରତିଶୋଧ ନେବା ଆଶାମନେ  ଉଠେ ଉକୁଟି ।୧୭୦।

ଜନକ ଇଙ୍ଗିତେ ଦେବଯାନୀ ଭାଷେ ବଚନ ରୋଷେ,
ଅପମାନ ମୋତେ ଦେଇଛି ସେ ରାଜ ଗର୍ବ ସାହସେ ।୧୭୧।

ସେ ଗରବ ତାର ନାଶ ହେବ ଆସୁ ମୋ ଦାସୀ ହୋଇ,
ହସ୍ତିନା ପ୍ରାସାଦେ ମୋ ସେବା କରିବ ପାଖରେ ଥାଇ ।୧୭୨।

ଚଡ଼କ ପଡେକି ପଡ଼ିଗଲା ବୃଷପର୍ବା ମସ୍ତକ,
ଘୁରିଗଲା ମଥା ନସ୍ଫୁରିଲା କଥା ହଜେ ବିବେକ ।୧୭୩।

କିପରି କହିବେ ସ୍ନେହ ପ୍ରତିମାକୁ ହେବାକୁ ଦାସୀ,
କିପରି ପିନ୍ଧାଇ ଦେବେ ତାର ଗଳେ ମରଣ ଫାଶୀ ।୧୭୪।

ପତ୍ର ଲେଖି ଭୃତ୍ୟ ହାତେ ପଠାଇଲେ ଶର୍ମିଷ୍ଠା ପାଶ,
ଜଣାଅ ତୋହର ବିଚାର ସତ୍ୱର କରି ପ୍ରକାଶ ।୧୭୫।

ଅସୁର ଜାତିର ଜୀବନେ ଅବା ତୋ ଜୀବନେ ଆଶ,
କେଉଁ ଥିରେ ତୋର ମମତା ଅଧିକ କର ପ୍ରକାଶ ।୧୭୬।

ତୁ ଯଦି କହିବୁ ଜାତି ପ୍ରତି ତୋର ନାହିଁ ମମତା,
ଦେବ ନାହିଁ ତାହା ଅନ୍ତରେ ମୋହର ତିଳେ ହେଁ ବ୍ୟଥା ।୧୭୭।

ଦାସୀ ହୋଇ ଯିବା ପାଇଁ ତୋତେ ମୁହିଁ କରୁନି ବାଧ୍ୟ,
ଦୁଇ ଘଡ଼ି ମାତ୍ର ସମୟ-ଜଣାଅ ତୋ ମନ ସାଧ ।୧୭୮।

ଦୂତଠାରୁ ପତ୍ର ପାଇ ଅବଗତ ଶର୍ମିଷ୍ଠା ହେଲେ,
ମଣିହରା ଫଣୀ ପରି ହୋଇ ସେ ତ ମଉଳିଗଲେ ।୧୭୯।

ରାଜ ଉଆସରେ ଜାଣିଲେ ସକଳେ ଉଠିଲା ରୋଳ,
ଅଶ୍ରୁ ନୁହେଁ ସେ ତ ଝରିଲା କି ସତେ ବରଷା ଜଳ ।୧୮୦।





ରାଣୀ ହଂସପୁରେ ପଶିଲା ସେ ସ୍ରୋତ ଧସାଇ କରି,
ମହାରାଣୀ ଧାଇଁ ଆସି ଶର୍ମିଷ୍ଠାକୁ ବକ୍ଷରେ ଧରି। ୧୮୧।

ଦାସୀ ରୂପେ ଯାଅ ବୋଲି ନପାରିଲେ ମୁଖରେ କହି,
ଅଶ୍ରୁ ଗଡ଼ାଇଲେ ଅନର୍ଗଳ ଖାଲି ନିର୍ବାକ ହୋଇ। ୧୮୨।

ବାକି ଅଛି ଅଳ୍ପ ପୁରିଯିବା ପାଇଁ ଦ୍ୱିଘଡ଼ି ବେଳ,
ମହା ଅନ୍ତର୍ଦ୍ୱନ୍ଦେ ଶର୍ମିଷ୍ଠା ପାଉନି ଯେ ଥଳକୂଳ। ୧୮୩।

ନିଜତ୍ୱକୁ ବିକି ଦାସୀ ହୋଇ ଯିବା ସହଜ ନୁହେଁ,
ସ୍ୱଜାତିକୁ ଧ୍ୱଂସ ଜାତି ପ୍ରେମୀ କେଉଁ ସନ୍ତାନ ଚାହେଁ। ୧୮୪।

କଚଙ୍କର ସ୍ମୃତି ଶର୍ମିଷ୍ଠା ଅନ୍ତରେ ଉଠିଲା ଚେଇଁ,
ଦେବତାଙ୍କ ହିତେ ପ୍ରାଣ ଦେବାକୁ ସେ ଆସିଲେ ଧାଇଁ। ୧୮୫।

ମନ୍ତ୍ରର ସାଧନ ଶରୀର ପାତନ ବେନିରୁ ଏକ,
ହେଲେ ବୀରଙ୍କର ନଥାଏତ କେବେ ମନରେ ଦୁଃଖ। ୧୮୬।

ଅବଳା ହେଲେବି ବୀରତ୍ୱ ପରୀକ୍ଷା ଦେବେ ସେ ଆଜି,
ଦେବଯାନୀ ଦାସୀ ସାଜି ଯିବା ପାଇଁ ହେବେ ସେ ରାଜି। ୧୮୭।

ମାଆଙ୍କ ଚରଣ ଛୁଇଁ ପହଞ୍ଚିଲେ ପିତାଙ୍କ ପାଶେ,
ପିତାଙ୍କ ଚରଣ ଛୁଇଁ, ଯିବାପାଇଁ ଦାସୀ ମାନସେ। ୧୮୮।

ଶର୍ମିଷ୍ଠାର ପାଦେ ବୃଷପର୍ବା ହାତେ ପଡ଼ିଲେ ଶୋଇ,
ଝିଅ ନୁହଁ ତୁତ ମାଆକେତେ ତ୍ୟାଗ ତୋର ମୋ ପାଇଁ। ୧୮୯।

ଏକି କର ପିତା ଝିଅ ନୁହେଁ ମୁଁ ଯେ ତୁମର ପୁଅ,
ଯୁଦ୍ଧ କ୍ଷେତ୍ରେ ଯିବି ବିଜୟର ଟୀକା ପିନ୍ଧାଇ ଦିଅ। ୧୯୦।

ଜୀବନ ଯୁଦ୍ଧରେ ଦାସୀ ଭୂମିକାରେ ମୋ ଅଭିନୟ,
ରାଜଜେମା ବୋଲି ନରହିବ ତହିଁ ମୋ ପରିଚୟ। ୧୯୧।

ହୁଏ ପଛେ ଦାସୀ ଅଭିନୟ ମୋର ସଫଳ ହେଉ,
ଜାତି ଇତିହାସେ ନାମ ମୋର କାଳ କାଳକୁ ଥାଉ। ୧୯୨।

ଦେବଯାନୀଙ୍କର ଦାସୀ ହେବା ପାଇଁ ନାହିଁ ଆପତ୍ତି,
ଶୁଣନ୍ତୁ ସକଳେ ଏହା ଅଟେ ମୋର ଶେଷ ନିଷ୍ପତ୍ତି। ୧୯୩।





ଶର୍ମିଷ୍ଠାଙ୍କ ଗୁଣେ ମୁଗ୍ଧ ହେଉଥିଲା ରାଜାଙ୍କ ମନ,
ତାଙ୍କ ତ୍ୟାଗ ଦେଖି କହୁଥିଲେ ମନେ ସେ ଧନ୍ୟ ଧନ୍ୟ।୧୯୪।

ଦେବଯାନୀ ପ୍ରତିଶୋଧକୁ ପସନ୍ଦ ନପାରି କରି,
ଆସିଲେ ହସ୍ତୀନା ଉଭୟଙ୍କୁ ତହୁଁ ସାଥିରେ ଧରି।୧୯୫।

ସମୟ ସ୍ରୋତରେ ଭାସି ଭାସି ଚାଲେ ଜୀବନ ତରୀ,
କେତେବେଳେ କାଉ -ଶାଗ ପୁଣି କେବେ ଖେଚୁଡ଼ୀ-କ୍ଷିରୀ।୧୯୬।

ରାଜା ଝିଅ ଦାସୀ ଋଷି ଝିଅ ରାଣୀ ବିଧି ବିଧାନ,
ମୂଳେ କି ରହସ୍ୟ କରିବାକୁ ହେବ ଅନୁସନ୍ଧାନ।୧୯୭।

ସେ ପାଇଁ ତ ମନ - ବିହଙ୍ଗୀ ଆସୁଛି ହସ୍ତୀନା ଉଡ଼ି,
ହିମାଳୟ ପାଦଦେଶରୁ ଅସୁର ରାଇଜ ଛାଡ଼ି।୧୯୮।

ମନେ ହୁଏ ଯାହା ଭାଗ୍ୟଠାରୁ ବଡ଼ ଆଉ କେ ନାହିଁ,
ଦଇବ ଦଉଡ଼ି ଯେଣେ ଟାଣେ ସିଏ ତେଣିକି ଯାଇ।୧୯୯।

ଅଦେଖା ହାତର କରାମତି କିଏ ପାରିବ କଳି,
ତାହାତ ମୁଠାରୁ ଖସି ଯିବା ପାଇଁ ଅଛି କେ ବଳୀ।୨୦୦।

ଦେବଯାନୀ ଧରିଆଣି ଅଛି ସତ ଶର୍ମିଷ୍ଠା ଚୁଟୀ,
ମାତ୍ରତାର ଧୈର୍ଯ୍ୟ ବଳ କରିପାରି ନାହିଁ ସେ ଲୁଟି।୨୦୧।

ଅସୀମ ଧୈର୍ଯ୍ୟର ଅଧିକାରିଣୀ ସେ ହୋଇଛି ଆଜି,
ଦେଖିବା ଦଇବ କିପରି ଲେଖୁଛି ଶର୍ମିଷ୍ଠା ପାଞ୍ଜି।୨୦୨।





# ତୃତୀୟ ସର୍ଗ

## ରାଗ-ବଙ୍ଗଳାଶ୍ରୀ

ଦୂତ ଉପଗତ ହସ୍ତୀନା ପ୍ରାସାଦେ
ନୃପତି ବାରତା ଘେନି;
କାନନେ ଗାନ୍ଧର୍ବ ବିବାହେ ବରିଛି
ନୃପତିଙ୍କୁ ଦେବଯାନୀ ।୧।

ବୃଷପର୍ବା ରାଜ କେମା ଯେ ଶର୍ମିଷ୍ଠା
ଆସୁଛନ୍ତି ତାଙ୍କ ସାଥେ;
ରାଜ ମାତା ଅର୍ଘ୍ୟ - ଥାଳି ଧରି ଆସି
ଆଶୀର୍ବାଦ ଦେବେ ସୁତେ ।୨।

ଦୂତ ମୁଖୁ ବାର୍ତ୍ତା ପାଇରାଜ ମାତା
ଅତି ହରଷିତା ହୋଇ;
ଦାସୀ ପରିବାରୀ ବାଦ୍ୟ ବୃନ୍ଦ ଧରି
ସିଂହଦ୍ୱାରେ ହେଲେ ଯାଇ ।୩।

ଶଙ୍ଖ ହୁଳ ହୁଳି ଶବଦେ ଉଚ୍ଛୁଳି
ପଡୁଛି ରାଜ ଉଆସ;
ରାଜ ପୁରୋହିତ କଣ୍ଠରୁ ଶୁଭୁଛି
ମଙ୍ଗଳାଷ୍ଟକର ଘୋଷ ।୪।

ପୁତ୍ର ପୁତ୍ରବଧୂ ବନ୍ଦାପନା ସାରି
ଡ଼କାଇ ଅମାତ୍ୟ ଗଣ;
ରାଜକୀୟ ଆଡ଼ ମ୍ବରେ କରିବାକୁ
ବିବାହର ଆୟୋଜନ ।୫।

ଆଦେଶିଲେ ରାଜ ମାତା ଯଥା ଶୀଘ୍ର
ଶୁଭଲଗ୍ନ କରି ସ୍ଥିର;
ରାଜ ପୁରୋହିତେ ପାଣି ଗ୍ରହଣର
କରନ୍ତୁ ବେଳା ବିଚାର ।୬।



ହୀରା, ନୀଳା, ମୋତି,　　　ମାଣିକ୍ୟ-ରତନ
　　ଖଚିତ ବିତାନ ମାନ,
ବିବାହ ମଣ୍ଡପ　　　ଝଲ ମଲ କରି
　　ମୋହୁଥାଏ ଜନମନ ।୭।

ଠାବେ ଠାବେ ନାନା　　　ପୁଷ୍ପର ତୋରଣ
　　ସୁବାସରେ ମନ ମୋହେ;
ପ୍ରାସାଦ ଚୂଡ଼ାରେ　　　ବୀର ବୈଜୟନ୍ତୀ
　　ଫର ଫର ଉଡୁଥାଏ ।୮।

ବିଭିନ୍ନ ଦେଶର　　　ରାଜାମାନେ ନିଜ
　　ସଇନ୍ୟ ସାମନ୍ତ ଧରି,
ସମ୍ରାଟଙ୍କ ପାଇଁ　　　ଉପହାର ଆଣି
　　ପୁର ଦେଉଥାନ୍ତି ଭରି ।୯।

ରାଣୀ ହଂସପୁରେ　　　ଦେବଯାନୀ ପାଶେ
　　ଦାସୀଏ ଥାଆନ୍ତି ଘେରି,
ସତେକି ଚନ୍ଦ୍ରକୁ　　　ତାରାଗଣେ ଘେରି
　　ଆକାଶ ଦେଖିବା ପରି ।୧୦।

ଶୁକ୍ରଙ୍କର ତପ　　　ମୃତ ସଞ୍ଜୀବନୀ
　　ମନ୍ତ୍ରର ବୃତ୍ତାନ୍ତ ମାନ,
ରାଜ ମାତା ବସି　　　ବସି ଶୁଣୁଥାନ୍ତି
　　ଦେବଯାନୀଙ୍କ ବୟାନ ।୧୧।

ମଝିରେ ମଝିରେ　　　ସ୍ୱବଂଶ ଗାରିମା
　　ନହୁଷଙ୍କ ବୀରପଣ
ଗରବ ଛଳରେ　　　ରାଜ ମାତା ମଧ୍ୟ
　　କହୁଥାନ୍ତି ପୁନଃ ପୁନଃ ।୧୨।

ଦୀର୍ଘ କାଳଧରି　　　ଶର୍ମିଷ୍ଠା ଦଣ୍ଡାୟମାନ
　　ହୋଇଥିବା ଦେଖି,
କହିଲେ ଶର୍ମିଷ୍ଠା　　　ବସୁନାହିଁ କିଆଁ
　　ମୁହଁ ଯାଇଅଛି ଶୁଖି ।୧୩।



ଦେବଯାନୀ ଦେଲେ ଉତ୍ତର ସହସା
ବସି ପାରିବନି ସିଏ,
ମୋ ଆଦେଶ-ସିଏ ପଙ୍ଖା କରୁଥିବ
ମୁଁ ବସିଥିବା ଯାଏ । ୧୪ ।

ରାଜମାତା ହୋଇ ବିସ୍ମିତା ବୋଇଲେ
ସେ ପରା ତୁମ ସଙ୍ଗିନୀ,
"ଥିଲା ଦିନେ-କିନ୍ତୁ ଆଜି ସେ ମୋ ଦାସୀ
ଉତ୍ତରିଲେ ଦେବଯାନୀ । ୧୫ ।

ରାଜକେମା ହୋଇ ଦାସୀ ହେଲା ଏହା
କିପରି ହେଲା ସମ୍ଭବ,
"ପୁତ୍ରଙ୍କୁ ପଚାରି ବୁଝନ୍ତୁ ଜାଣିବେ
ମୋ ପିତାଙ୍କ ଗଉରବ " । ୧୬ ।

ହୋଇଥାଏ ଯଦି ସତ ଅବା ଏହା
ଏଠାରେ ଚଳିବ ନାହିଁ;
କ୍ଷତ୍ରିୟ ପୁରରେ କ୍ଷତ୍ରିୟର କନ୍ୟା
ଦାସୀ ହୋଇପାରେ ନାହିଁ । ୧୭ ।

କ୍ଷତ୍ରିୟର ଦାସୀ ନୁହେଁ ସେ ମୋ ଦାସୀ
ବ୍ରାହ୍ମଣର କନ୍ୟା ମୁହିଁ,
ସେ ଖବର ମୋର ବୁଝିବା ଦାୟିତ୍ୱ
ତା'ଚିନ୍ତା କରନ୍ତୁ ନାହିଁ । ୧୮ ।

ଏହି ଆଲୋଚନା ଶୁଣି ଶର୍ମିଷ୍ଠାଙ୍କ
ଆଖି ହୁଏ ଛଳ ଛଳ;
ବିସ୍ମିତ ନେତ୍ରରେ ଦାସୀମାନେ ତାଙ୍କୁ
ଚାହିଁଥାନ୍ତି କଳ କଳ । ୧୯ ।

ରାଜ ମାତାଙ୍କର ସ୍ନେହର ନିର୍ଝର
ଝର ଝର ଗଲା ଝରି;
ଶର୍ମିଷ୍ଠାକୁ ପାଶେ ବସାଇ ଆଉଁଷି
କେଶକୁ ସାଉଁଳି କରି । ୨୦ ।





ଭାଷିଲେ କୋମଳ ବଚନ ମା ଆନ
ମନରେ ନ ଭାବ ତୁହି;
ମୋହୃଦେ ତୋ ପାଇଁ ଅବାରିତ ସ୍ନେହ
ମାଆପରି ତୋର ମୁହିଁ ।୨୧।

ରାଜ ମାତା ବୃଥା ଚିନ୍ତା ଛାଡ଼ି ଦେଇ
ଯାଆନ୍ତୁ ବିଶ୍ରାମ ନେବେ;
କହି ଦେବଯାନୀ ରୋଷେ ଆନପୁରେ
ଚାଲିଗଲେ ଅତି ବେଗେ ।୨୨।

ଶର୍ମିଷ୍ଠାଙ୍କ ପାଇଁ ଶାଶୁ ବୋହୂଙ୍କର
ମନ ମିଶିଲାନି ଆଉ,
ଶର୍ମିଷ୍ଠାଙ୍କ ଭାଗ୍ୟ ଆକାଶରୁ ଟିକେ
ଅପସରି ଗଲା ରାହୁ ।୨୩।

କେତେ ଥିଲା ଆଶା ମନରେ ତାଙ୍କର
ହୋଇଥାନ୍ତା ସ୍ୱୟମ୍ବର,
ଶହ ଶହ ରାଜା ବିଜେ କରିଥାନ୍ତେ
ଆସି ସଭାମଣ୍ଡ ପର ।୨୪।

କେଉଁ ଯୁବରାଜ କୋଳ ମଣ୍ଡନଯେ
କରୁଥାନ୍ତେ ହସି ହସି;
ପିତାମାତା ଦେଇ ଥାନ୍ତେ ହାତୀ ଘୋଡ଼ା
ଯଉତୁକ ରାଶି ରାଶି ।୨୫।

ଦେବଯାନୀଙ୍କୁ ସେ କି ଦୁର୍ଯୋଗ କଲେ
ଅବାଞ୍ଛିତ ପରିହାସ;
ଯାହା ଫଳେ ଆଜି ସହିବାକୁ ହେଲା
ଭାଗ୍ୟର ଏ ଉପହାସ ।୨୬।

ନିଦ୍ରା ହୁଏ ନାହିଁ ଦିବସ ଶର୍ବରୀ
ଆହାରେ ନଥାଏ ମନ;
ଅନବରତରେ ଚିନ୍ତା କରି କରି
କଟି ଯାଉଥାଏ ଦିନ ।୨୭।



ଦିନେ ଦେବଯାନୀ ହାତ ଭଙ୍ଗାଖିଲି
ପାନକୁ ଯଯାତି ଖାଇ;
କହିଲେ କି ପାନ ଦେଲ ଟିକେ ହେଲେ
ପାଟି ରଙ୍ଗ ଦିଶୁନାହିଁ ।୨୮।

ଦେବଯାନୀ ଦେଲେ ଆଦେଶ ଶର୍ମିଷ୍ଠା
ଭାଙ୍ଗି ଦିଅ ଖଣ୍ଡେ ପାନ;
ଅତି ଯତନରେ ଶର୍ମିଷ୍ଠା ବାନ୍ଧିଲେ
ରାଜାଙ୍କର ଖିଲି ପାନ ।୨୯।

ପାନ ଖଣ୍ଡି ଖାଇ ଦରପଣ ଚାହିଁ
ହସି ହସି ମହାରାଜ;
କହିଲେ ଦେଖିଲ - ଅଧର ଏଥର
ଜବାବି ପାଇବ ଲାଜ ।୩୦।

ଦେବଯାନୀ ରାଗେ କହିଲେ ଆଶ୍ରମେ
ପାନ କେବେ ଖାଇନାହିଁ,
ଛେଳିପରି ପାନ ପାକୁଳି କରନ୍ତି
ରାଜାଏ ଉଆସେ ଥାଇ ।୩୧।

ଯଯାତି କହିଲେ ସେ କଥାତ ନୁହେଁ
ହୃଦୟର ସ୍ନେହ ଭାବ,
ପାନ ମାଧ୍ୟମରେ ପ୍ରକାଶିତ ହୁଏ
ରଙ୍ଗ ଯେତେ ଗାଢ ହେବ ।୩୨।

ଛୁରି ଚାଲିଗଲା ଦେବଯାନୀ ଦେହେ
ରାଜାଙ୍କ ବଚନ ଶୁଣି;
କହିଦେଲେ ରାଗେ ଶର୍ମିଷ୍ଠାକୁ ଏବେ
ରଖ କରି ରାଜରାଣୀ ।୩୩।

କ୍ଷତ୍ରୀୟର କନ୍ୟା ବୋଲି ରାଜମାତା
ହୃଦ ଦେଇଛନ୍ତି ଖୋଲି;
ପାନ ଖଣ୍ଡେ ଖାଇ ମହାରାଜ ନିଜ
ବିବେକ ଯାଆନ୍ତି ଭୁଲି ।୩୪।



ପରିହାସ ଆଉ ଅଧିକ କରିଲେ
ପରିଣତି ବିଷମୟ,
ହେବ ଜାଣି ରାଜା ବଦଳାଇ ଦେଲେ
ପୁଣି ସେ କଥାର ଖିଅ ।୩୫।

ରାଜ ଜଉତିଷ ମଧୁ ମିଳନର
ଶୁଭଦିନ କଲେ ସ୍ଥିର;
ଅଗୁରୁ ଚନ୍ଦନ ଚୁଆ କସ୍ତୁରୀରେ
ମହକିଲା କେଳି ପୁର ।୩୬।

ଦିବା ଅବସାନ ନିଶି ଆଗମନ
ଆଶାରେ ଯଯାତି ମତି;
ହୁଏ ଛନ ଛନ ଦେବଯାନୀ ସାଥେ
ଯାପିବାକୁ ମଧୁରାତି ।୩୭।

ଶର୍ମିଷ୍ଠାକୁ ଡ଼ାକି ଦେବଯାନୀ କହି
ଥାନ୍ତି ଭାଙ୍ଗିବାକୁ ପାନ;
କେଳି ପୁର ପାଶେ ଜଗି ରହିଥିବୁ
ଡ଼ାକିଲେ ଦେବୁ ବହନ ।୩୮।

ଶର୍ମିଷ୍ଠା ଉପରେ ପ୍ରତିଶୋଧ ନେବା
ପାଇଁ ଏହି ଆୟୋଜନ;
ଜଳିଲେ ଅନ୍ତର ତାର ନିରନ୍ତର
ତୃପ୍ତ ହେବ ଯାଇ ମନ ।୩୯।

ଛାତିକୁ ପଥର କରିଛି ଶର୍ମିଷ୍ଠା
ଦୁଃଖକୁ ଗଳାର ହାର;
ନୟନର କୋଣୁ ଝରି ଝରି ଅଶ୍ରୁ-
ସରିତ ଗଲାଣି ନୀର ।୪୦।

ମନକୁ ସାନ୍ତ୍ୱନା ଦେଇଅଛି ସିଏ
ଦାସୀଘରେ ଜନ୍ମତାର,
ଦାସୀ ରୂପେ ଅଭିନୟ କରିବାକୁ
ସିଏ ବଦ୍ଧ ପରିକର ।୪୧।



ମନେ ପଡ଼ିଗଲା                    କଚ କହୁଥିଲେ
ମନେ ରଖ ରାଜକେମା;
ତ୍ୟାଗରେ ପ୍ରେମର                    ପରାକାଷ୍ଠା ସିନା
ତ୍ୟାଗରେ ପ୍ରେମ ଗାରିମା ।୪୨।

ପ୍ରେମର ସନ୍ତକ                    ପାଇଁ କି ପ୍ରେମିକ
ପ୍ରେମିକା ତ୍ୟାଗ ସ୍ୱୀକାର;
ଇତିହାସେ ସ୍ୱର୍ଣ୍ଣା-                    କ୍ଷରେ ଲେଖାରହେ
ଯାବତ ଚନ୍ଦ୍ର ଭାସ୍କର ।୪୩।

ସେହି ଆକର୍ଷଣ                    ବଳେ ପୂନର୍ଜନ୍ମ
ପାଇଁ ଆସେ ଧରା ପରେ,
ପ୍ରେମ ପାଇଁ ତ୍ୟାଗ                    କରିବାରେ ଶ୍ରଦ୍ଧା
ରହିଥାଏ ନିରନ୍ତରେ ।୪୪।

ସେ ଦିନ ତାଙ୍କର                    ଏକଥାର ଅର୍ଥ
ବୁଝି ମୁଁ ପାରିଲି ନାହିଁ,
ମୋର ଭବିଷ୍ୟତ                    ଦେଖି ନିଶ୍ଚେ କଚ
ଏହିପରି ଥିବେ କହି ।୪୫।

ରାଜକେମା ଯେଉଁ                    ଶର୍ମିଷ୍ଠା ଥିଲା ସେ
କେବେଠୁଁ ଗଲାଣି ମରି,
ଆଜିର ଶର୍ମିଷ୍ଠା                    ଦାସୀ, ତାର କଥା
ଭାବି କିଆଁ ହେବଝୁରି ।୪୬।

ପାନ ଡ଼ବା ଧରି                    ଜଗି ରହିଥାଏ
କେଳି ପୁରଠାରୁ ଦୂରେ,
ଦେବଯାନୀ ତେଣେ                    ରତନ ପଲଙ୍କେ
ରାଜାଙ୍କୁ ପ୍ରତୀକ୍ଷା କରେ ।୪୭।

ରାଜ କାର୍ଯ୍ୟ ସାରି                    କେଳି ପୁରେ ବିଜେ
ହେଉଛନ୍ତି ନରପତି;
ମନରେ ତାଙ୍କର                    ମଧୁ ମିଳନର
କାମ କଳପନା ତାତି ।୪୮।



ଦେବଯାନୀଙ୍କୁ ସେ ଆଲିଙ୍ଗନ କରି
ଆଖିରେ ମିଶାଇ ଆଖି,
ମଦନ ଦେବଙ୍କ ସଦନରୁ ସବୁ
ଲବଣୀ ଦେବେ କି ଚାଖି ।୪୯।

ରୂପ-ସରସୀର ପ୍ରୀତି-ନୀରେ ବୁଡ଼ି
କରିବାକୁ ଅବଗାହ,
ଦେଇଛି ଦଇବ ଦେବଯାନୀ ସାଥେ
ଆଜିର୍ ଶୁଭ ସମୟ୍।୫୦।

ଏହିପରି ଭାବି ଭାବି ନରପତି
କେଳିପୁରେ ହେଲେ ଯାଇ,
ଦେଖିଲେ ରତନ ପଲଙ୍କ ମଣ୍ଡିଣ
ଦେବଯାନୀ ଅଛି ଚାହିଁ।୫୧।

ଭାଷିଲେ ରାଜନ ବିଳମ୍ବ ପାଇଁ ମୋ
କ୍ଷମା ଦିଅ ମହାରାଣୀ,
ଏକାକିନୀ ତୁମେ ଚାହିଁ ରହିଥିବ
ବୋଲି ନ ପାରିଲି ଜାଣି।୫୨।

ନାଗୁଣୀ ପରାୟେ ଫୁଁଫୁଁକାର କରି
ଗରଜିଲେ ଦେବଯାନୀ,
ପ୍ରଣୟର ନିଶା ଦୂର ହୋଇଗଲା
କ୍ରୋଧରେ ହୋଇ ବାଘୁଣୀ।୫୩।

ଯେଉଁ ନୟନରୁ କନ୍ଦର୍ପ ବିଶିଖ
ଅଧରରୁ ସ୍ମିତ ହାସ,
ଝରିଥାନ୍ତା ତହୁଁ ଅନଳ ସହିତ
ଉଦ୍‌ଗିରଣ ହେଲା ବିଷ।୫୪।

ଚାଲିଯାଅ ଦୂରେ ଛୁଅଁ ନାହିଁ ମୋତେ
ଚାହିଁ ବିନି ତୁମ ମୁହଁ,
କିହେଲା କିହେଲା ପୁଛିଲେ ରାଜନ
କାହିଁକି ଏପରି କୁହ।୫୫।





ମଦ୍ୟପାନ କରି ଆସିଅଛ ମୁଖୁଁ
ଦୁର୍ଗନ୍ଧ ହୁଏ ବାହାର,
ତୁମ୍ଭଙ୍କୁ ଛୁଇଁବା ପାଇଁ ହୁଏ ଘୃଣା
ସମ୍ଭବ କାହୁଁ ବିହାର।୫୬।

ବସିଥାଅ ଏଠି - କେଳିପୁରେ ଏକା
ମୁଁ ଯାଉଛି ମୋର ପୁରେ,
ଭାଷିଲେ ରାଜନ ସତ୍ୟ କହୁଛି ମୁଁ
ନପିଇବି ଆଉ ଥରେ।୫୭।

ପିତାଙ୍କ ଶପଥ ନେଇ ମୋର କୁହ
ହୋଇବ ତେବେ ପ୍ରତ୍ୟୟ,
କରୁଛି ଶପଥ ଆଜ ମନୋରଥ
ପୂରଣେ ହୁଅ ସଦୟ।୫୮।

ନ ପାରିବି ତୁମ ପାଖେ ବସି ଅବା
ଅଧରେ ଅଧର ଯୋଡ଼ି,
ସହି ନ ପାରିବି ସୁରାର ଦୁର୍ଗନ୍ଧ
ପିଣ୍ଡୁ ପ୍ରାଣ ଯିବ ଛାଡି।୫୯।

ସୁରାଠାରୁ ଆଉ କଦର୍ଯ୍ୟ ପାନୀୟ
ସଂସାରରେ କିଛି ନାହିଁ,
ସୁରା ଯୋଗୁଁ ମୃତ ସଞ୍ଜିବନୀ ମନ୍ତ୍ର
ପିତା ମୋ ଥିଲେ ହରାଇ।୬୦।

ରୋଷେ ଭାଷି ରାଣୀ ଚେଙ୍ଗାବାଣ ପରି
କେଳିପୁର ଗଲେ ଛାଡ଼ି,
ବାତାହତ ରମ୍ଭା ବୃକ୍ଷପରି ରାଜା
ପଲଙ୍କରେ ଗଲେ ପଡ଼ି।୬୧।

ପଥେ ଜଗିଥିଲେ ଶର୍ମିଷ୍ଠା ବଡାଇ
ଦେଲେ ଭଙ୍ଗା ଖିଲିପାନ,
ଫିଙ୍ଗି ଦେଇ ରୋଷେ ପାଦେ ଦେବଯାନୀ
କରିଦେଲେ ମରଦନ।୬୨।





କାନୁ କାନେ ହୋଇ ରାଣୀଙ୍କର ଢଙ୍ଗ
ଜାଣି ଗଲେ ଦାସୀମାନେ,
ମୁହଁ ଖୋଲି ପଦେ କହିବାକୁ କାହା
ସାହାସ ନାହିଁ ବଦନେ ।୬୩।

ରତନ ପଲଙ୍କେ ଗଡୁଛନ୍ତି ରାଜା
ନିଦଟିକେ ଲାଗୁନାହିଁ,
ଦେବଯାନୀ ବାଣୀ ଅଗ୍ନିବାଣ ସମ
ମର୍ମ ଦେଉଅଛି ଦହି ।୬୪।

ଅଗସ୍ତିଙ୍କ ଅଭିଶାପ ରହି ରହି
କହୁଛି ଯେପରି କାନେ,
ରାଜ ସମ୍ପଦରେ ସୁଖ ନପାଇବେ
ନହୁଷଙ୍କ ପୁତ୍ରମାନେ ।୬୫।

ଦେବଯାନୀ ରୂପେ ଶୁକ୍ରଙ୍କର ତପେ
ମୁଗ୍ଧ ହୋଇଗଲା ମନ,
କାହାକୁ ନବୁଝି ନପଚାରି ବନେ
କଲି ମୁଁ ପାଣି ଗ୍ରହଣ ।୬୬।

ଶର୍ମିଷ୍ଠା ଉପରେ ପ୍ରତିଶୋଧ ନେବା
ଅଭିପ୍ରାୟ ଯା'ର ଦେଖି,
ଭାବିଥିଲି ମହା ଜିଦ୍‌ଖୋର ଆଉ
ହିଂସ୍ର ମୋର ପ୍ରିୟ ସଖୀ ।୬୭।

ପ୍ରତ୍ୟକ୍ଷ କରିଲି ଆଚରଣ ଏତ
ବାଘୁଣୀଠୁଁ ଭୟଙ୍କର,
ଝାଡ଼ି ଦିଅନ୍ତି ଯା' ଦାନ୍ତ ଖାଲି ଏକା
ଶୁକ୍ରଙ୍କୁ ମୋହର ଡ଼ର ।୬୮।

ଦେବଯାନୀ ମନେ କଷ୍ଟଦେବ ନାହିଁ
କହିଥିଲେ ମହାମୁନି;
ସେ କଥା ସୁମରି ଅନ୍ତର୍ଦାହ ସହି
ହୋଇଅଛି ଯାହା ତୁନି ।୬୯।



ନୋହିଲେ ଆନନ୍ଦ ଭବନେ ଆନନ୍ଦେ
ବିଳାସିନୀ ଗଣ ଧରି,
ତାରାଗଣେ ଧରି ତାରା ପତି ପ୍ରାୟ
କାଟନ୍ତି ଦିବା ଶର୍ବରୀ ।୭୦।

ଦେବଯାନୀ ପରି ସୁନ୍ଦରୀ ସରଗ
ପୁରେ କେ ପ୍ରାୟ ନଥିବ;
ସୌନ୍ଦର୍ଯ୍ୟ ଭିତରେ ଏଡ଼େ ଅହଂକାର
କାହିଁକି ଦେଲା ଦଇବ ।୭୧।

ନିଦ୍ରା ଦେବୀ କୋଳେ ସୁଖରେ ନିମଜ୍ଜି
ଯାଇଛନ୍ତି ପୁରବାସୀ;
ବିରହ ଉରଗ ଗରେ - ହୋଇ ଘାରି
ପାହିଲା ମୋ ଆଜ ନିଶି ।୭୨।

ଦେବଯାନୀ ସତେ ଶାନ୍ତିରେ ଶୟନ
କରିଥିବ କି ରାତିରେ ?
ମାରି ନ ଥିବ କି ମାର ଫୁଲଶର
ସାର କିଶୋରୀ ଛାତିରେ ।୭୩।

ବିହଙ୍ଗ ନିସ୍ୱନେ ଛନ ଛନ ହେଲା
ଯାମିନୀ- କାମିନୀ ମନ,
ନିଜ ଛାୟା ବାଜି - ପଶରା ସଜାଡ଼ି
ଲୁଚାଇଲା ଅପଘନ ।୭୪।

ଏକାଳେ ଶର୍ମିଷ୍ଠା ଜଣାଇଲେ ଆସି
ମହାରାଜାଙ୍କର ପାଶ,
ଆସନ୍ତୁ ମଣିମା - ସତ୍ୱରେ ରାଣୀମା
ଶରୀରେ ପାଆନ୍ତି କ୍ଲେଶ ।୭୫।

ରାଜ ବୈଦ୍ୟ ଦେଖି ଔଷଧ ଖୁଆଇ
ଦେଇ ଏବେ ଯାଇଛନ୍ତି,
ତଥାପି ମଣିମା ବିଜେ ହେଲେ ନିଜେ
ଦୂର ହୋଇ ପାରେ ଶ୍ରାନ୍ତି ।୭୬।



ଦେବଯାନୀ ପରେ ନରପତିଙ୍କର
ହୋଇଥିଲା ଯେଉଁ କ୍ରୋଧ,
ସହସା ଉଭେଇ ଗଲା ତାହା ଶୁଣି
ଶର୍ମିଷ୍ଠାଙ୍କର ସମ୍ବାଦ।୭୭।

ରାଣୀ ହଂସପୁରେ ପ୍ରବେଶି ଦେଖିଲେ
ବିମର୍ଷ ବଦନା ରାଣୀ,
ଅବସନ୍ନ ଦେହ ଶୁଖିଅଛି ମୁହଁ
ନୟନୁ ବହଇ ପାଣି।୭୮।

ବିକଚ କମଳେ ଶିଶିର ପାତକି
ନିଶିରେ ଯାଇଛି ହୋଇ,
ଶତଦଳ ମୁଖୀ ମୁଖକୁ ନିରେଖି
ନପାରନ୍ତି ରାଜା ଚାହିଁ।୭୯।

ଋଷି କନ୍ୟା ହୋଇ ରୁସି ଆସି ଶଶୀ
ହାସୀ ପାଇଲୁକି ସୁଖ ?
ନିଜେ ଦୁଃଖ ଭୋଗୀ ଭୋଗାଇଲୁ ମୋତେ
ନିଶିରେ ଦାରୁଣ ଦୁଃଖ।୮୦।

କରିଥିଲି ଆଶା ରସା ସାର ଯୋଷା
ଭୂଷାକୁ କରି ବାହାର,
ସୁମନ ଶରକୁ ବରତିବା ପାଇଁ
କରିଥାନ୍ତି ଗଳାହାର।୮୧।

ହୃଦ -ସିଂହାସନେ ପ୍ରୀତି ପ୍ରତିମାକୁ
ଥୋଇ କରିଥାନ୍ତି ପୂଜା,
ଶମ୍ଭୁ ଶିରେ ପାଣି ଦେଇ ମଦନକୁ
ଦେଇଥାନ୍ତି ନେଇ ସଜା।୮୨।

ପ୍ରୀତି-ପାରାବାରେ ପ୍ରାଣପ୍ରିୟା-ତରୀ
ଧରି ଆସିଥାନ୍ତି ଘୁରି,
ଶୁଖିଲା ସାଗର ଅଗସ୍ତିଙ୍କ କୋପେ
ହେଲା ମରୀଚିକା ପରି ।୮୩।



ଛଳ ଛଳ ନେତ୍ରେ ଛଳନା ମୟୀରେ
ଲଳନା କହଇ ବାଣୀ,
ଛୁଇଁ କୁହ ଏବେ ଛୁଇଁ ବନି କେବେ
ଆଉ ସେ ଦୁର୍ଗନ୍ଧ ପାଣି।୮୪।

ସହିପାରେ ସବୁ ପୁରୁଷ ହୃଦୟ
ନାରୀ ଅଶ୍ରୁପାତ ଛାଡ଼ି,
ସେତିକି ଦେଖିଲେ ଦିଏ ସିଏ ସବୁ
ହୃଦରୁ ସ୍ନେହ ଅକାଡ଼ି।୮୫।

ଛାର ସୁରା ଯେବେ ବିମ୍ବାଧରୀ ସୁଧା
ଅଧର ସୁଖରେ ବାଧା-
ଉପୁଜାଇ ପାରେ ତାକୁ ଛାଡ଼ିବାରେ
ମୋର କି ରହିବ ଦ୍ୱିଧା।୮୬।

ରାଜବୈଦ୍ୟଙ୍କର ଔଷଧ ଅପେକ୍ଷା
ରାଜାଙ୍କର ଏହି କଥା,
ଉପଶମ କଲା ମହାରାଣୀଙ୍କର
ଅନ୍ତରୁ ଅଧିକ ବ୍ୟଥା।୮୭।

ଦେବଯାନୀ ପ୍ରୀତି- ସରସୀରେ ରାଜା
ଦିନୁ ଦିନ ଗଲେ ବୁଡ଼ି,
କେତେବେଳେ ପୁଷ୍ପ ବାଟୀକାରେ କେବେ
ପ୍ରାସାଦ ଚୂଡ଼ାରେ ଚଢି।୮୮।

ଭାବୁଥାନ୍ତି ରାଜା ଦିବସ ନଥାଇ
ହୋଇଥାନ୍ତା ଯେବେ ନିଶି,
ଶଶୀ ହାସୀ ପ୍ରୀତି ପିୟୁଷ ପରଶି
ହୋଇଥାନ୍ତେ କେତେ ଖୁସି।୮୯।

ରାଜକାର୍ଯ୍ୟ ପରି- ଚାଳନାରେ ମନ
ନଲାଗଇ କେତେବେଳେ,
ମନ-ମୀନ ତାଙ୍କ ବୁଡ଼ି ରହିଥାଏ
ଦେବଯାନୀ ପ୍ରେମଜଳେ।୯୦।



ପାଇଲେ ବାରତା ନୃପତି ସହସା
ଉତ୍ତରରେ ଦସ୍ୟୁମାନେ,
ରାଜ୍ୟ ଆକ୍ରମଣ କରିବାରୁ ରାଜ୍ୟ-
ବାସୀଙ୍କ ଆତଙ୍କ ମନେ ।୯୧।

ଶାର୍ଦ୍ଦୂଳ ଗୁହାରେ ମିରିଗର ନାଟ
ଗରଜି ଉଠିଲେ ରାଜା,
ଆଦେଶିଲେ ସୈନ୍ୟ- ଗଣେ ହୁଅ ସଜ
ଗରଜିଲା ବୀର ବାଜା ।୯୨।

ପିତାଙ୍କ ଆଦେଶେ ଅଶ୍ୱମେଧ ଯଜ୍ଞ-
ଅଶ୍ୱ ଧରି ଦିଗ୍‌ବିଜୟ -
କରି, ଉଡ଼ାଇଲି ଜୟ ବୈଜୟନ୍ତୀ
ଶୁଣିତା ଆସିନି ଭୟ !।୯୩।

ଲୟତାଙ୍କ ରହି ଯାଇଛି ଲୁଣ୍ଠନେ
ନିୟମ ଶୃଙ୍ଖଳା ଲଙ୍ଘି;
ସଜ ହୁଅ ସର୍ବେ ବାହାରିବି ଏବେ
ମାତାଙ୍କୁ ଆଶିଷ ମାଗି ।୯୪।

ବୀର ବେଷ ସାଜି ଯଯାତି ରାଜନ
ଜନନୀଙ୍କ ପାଶେ ହେଲେ;
ଦସ୍ୟୁର ଦମନ ପାଇଁ ମୁଁ ଗମନ
କରିବି ମା' ଅବହେଳେ ।୯୫।

ଦିଅମା ଆଶିଷ ଅରାତି ଦରପ-
ଦଳି, ଆସି ପଦତଳେ,
କରିବି ଭକତି ଜନନୀ ଗୋନିତି
ସେବି ଚରଣ ଯୁଗଳେ ।୯୬।

ବୀର ପ୍ରସବିନୀ ନହୁଷଙ୍କ ରାଣୀ
ଅଭୟ କରକୁ ଟେକି,
ଭାଷିଲେ ବଚନ ଯାଅ ବାପଧନ
ରଖ କୁଳ ମାନ ଟେକି ।୯୭।





ରାଜ ପୁରୋହିତେ ଗଣନା କରିଲେ
ଯାତ୍ରାର ଅମୃତବେଳା;
ଅର୍ଘ୍ୟଥାଳି ଧରି ବନ୍ଧାଇବା ପାଇଁ
ରାଣୀଙ୍କୁ ଡ଼ କରା ହେଲା ।୯୮।

ଅର୍ଘ୍ୟଥାଳି କରେ ଦେବଯାନୀ ଆସି
ରାଜାଙ୍କ ସମୀପେ ହେଲେ;
ଶଙ୍ଖ ହୁଳ ହୁଳି ଶବଦରେ ଦାସୀ
ପୁର ଉଚ୍ଛୁଳାଇ ଦେଲେ ।୯୯।

ସହସା ଏକାଳେ ଦୂତ ଏକ ଆସି
ଜଣାଇଲା ଯୋଡ଼ି କର;
ଶୁକ୍ରାଚାର୍ଯ୍ୟଙ୍କର ପାଶରୁ ଆସିଛି
ପତ୍ର ଘେନି କେହି ଚର ।୧୦୦।

ପିତାଙ୍କ ବିଷୟ ଜାଣିବା ପାଇଁକି
ହୋଇ ଅତି ତରତର;
ଶର୍ମିଷ୍ଠାଙ୍କୁ ଥାଳି ବଢାଇ ଧାଇଁଲେ
ଦେବଯାନୀ ଖରତର ।୧୦୧।

ଗଡ଼ି ଯାଉଥାଏ ଅମୃତର ବେଳା
ବିଜୟ ବନ୍ଧାଣ ପାଇଁ,
ମହାରାଣୀ ତେଣେ ଧାଇଁ ଯାଇଛନ୍ତି
କାହିଁ ତାଙ୍କ ଦେଖା ନାହିଁ ।୧୦୨।

ରାଜମାତା ଦେଲେ ଆଦେଶ ଶର୍ମିଷ୍ଠା
ତିଳକ ଆଳତି କର,
ସରି ଆସୁଅଛି ଅମୃତର ବେଳା
ଯିବ ଯୁଦ୍ଧେ ପୁଅ ମୋର ।୧୦୩।

ରାଜମାତାଙ୍କର ଆଦେଶେ ଶର୍ମିଷ୍ଠା
ତିଳକ କୁଙ୍କୁମ ଧରି,
ମହାରାଜାଙ୍କର କପାଳରେ ଗାର
ଟାଣି ବନ୍ଧାପନା କରି ।୧୦୪।



ଧୀରେ କାନ ପାଖେ କହିଲେ-"ରାଜନ
ସାବଧାନେ ଥିବେ ରହି"
ବୀଣା ଜିଣା କଣ୍ଠ ସୁମଧୁର ସ୍ୱର
ସତେକି ଆସିଲା ବହି ।୧୦୫।

ଯଯାତିଙ୍କ ଅଙ୍ଗ ପୁଲକି ଉଠିଲା
ଶର୍ମିଷ୍ଠା ପରଶ ପାଇ,
ସତେକି ବିଦ୍ୟୁତ୍ ସ୍ରୋତ ଅକସ୍ମାତ୍
ଶରୀରରେ ଗଲା ଛୁଇଁ ।୧୦୬।

ଭାବିଲେ ରାଜନ କେତେ ସ୍ନେହ ସତେ
ଶର୍ମିଷ୍ଠାର ମୋର ପାଇଁ,
ଏପରି କୋମଳ ବାଣୀ ଦେବଯାନୀ
ଦିନେ ହେଲେ କହି ନାହିଁ ।୧୦୭।

ବୀର ତୂର୍ଯ୍ୟ ନାଦ ରାଜ ହୃଦୟରେ
କମ୍ପନ ଜଣାଇ ଦେଲା,
ଅନୁକୂଳ କଲେ ଯଯାତିଙ୍କ ଜୟ
ଶବଦେ ମହୀ ପୂରିଲା ।୧୦୮।

ଦେବଯାନୀ ଆସି ଭାଷିଲେ ରାଜନ
ଜୟ ତବ ପାଦେ ଥୁଆ,
ତବ ଯାତ୍ରା କାଳେ ପିତାଙ୍କ ଆଶିଷ
ସହସା ଆସିଛି ଯାହା ।୧୦୯।

ସୈନ୍ୟ ବଳ ସାଜି ଆସନ୍ତି ଯଯାତି
ଶୁଣି ପାରି ଦସ୍ୟୁମାନେ,
ପ୍ରାଣ ଭୟେ ନିଜ- ଶିବିରକୁ ତେଜି
ଲୁଚିଲେ ଗହନ ବନେ ।୧୧୦।

ରାଜ କର୍ମଚାରୀ ଜଗାଇ ସେଠାରେ
ଫେରି ଆସି ରାଜଧାନୀ,
ପ୍ରେମସ୍ରୋତେ ପୁଣି ମଜ୍ଜିଲେ ଯଯାତି
କୋଳେ ଧରି ଦେବଯାନୀ ।୧୧୧।



ପତ୍ର ଦେଇ ଶୁକ୍ରାଚାର୍ଯ୍ୟ ହିମାଳୟ
ଗଲେ ତପସ୍ୟାର ପାଇଁ,
ଲେଖିଥିଲେ ପତ୍ରେ ତିନିମାସ ପରେ
ଦେବଯାନୀ ଯିବା ପାଇଁ ।୧୧୨।

ମୃତ ସଞ୍ଜୀବନୀ-ମନ୍ତ୍ର ହୋଇଗଲା
ଯେଣୁ ପରହସ୍ତ ଗତ,
ତାହାଠାରୁ ବଳି କଠୋର ସାଧନା
ବ୍ରତେ ହେଲେ ମୁନି ରତ ।୧୧୩।

ଶୁକ୍ରାଚାର୍ଯ୍ୟଙ୍କର ତପସ୍ୟାରେ ଶୁଭ
ସିଦ୍ଧି ଲାଭ ହେବା ପାଇଁ,
ଦେବଯାନୀ କଲେ ଯଜ୍ଞ ଆୟୋଜନ
ମୁନିମାନଙ୍କୁ ଡ଼କାଇ ।୧୧୪।

ଅଙ୍ଗିରା ଋଷିଙ୍କୁ ଯଜ୍ଞେ ଆସିବାକୁ
କରାଗଲା ନିମନ୍ତ୍ରଣ,
ବାରଣ କରିଲେ ଆସିବାକୁ ମୁନି
ନଜାଣି ତପ କାରଣ ।୧୧୫।

ଅଙ୍ଗିରାଙ୍କ ପ୍ରତ୍ୟାଖ୍ୟାନ ବାଣୀ ଶୁଣି
ରୋଷେ ଭାଷେ ଦେବଯାନୀ,
କିଏ ସେ ବାଚାଳ ଋଷି ମୋ ପିତାଙ୍କ
ତପଃ ତେଜ ନାହିଁ ଶୁଣି ।୧୧୬।

ମୃଦୁ ମୃଦୁ ହସି ଭାଷିଲେ ରାଜା ସେ
ନୁହଁନ୍ତି ସାମାନ୍ୟ ଋଷି,
କଚଙ୍କର ଗୁରୁ ମହାତପା ସଦା
ତପ କରୁଥାନ୍ତି ବସି ।୧୧୭।

କଚଙ୍କ ପାଖକୁ ଯାଇଥିଲା ଦୂତ
କରିବାକୁ ନିମନ୍ତ୍ରଣ,
ଆଶ୍ରମେ ନଦେଖି- ଫେରିଆସି ପୁଣି
ଜଣାଇଲା ବାର୍ତ୍ତାମାନ ।୧୧୮।



ଶେଷହେଲା ଯଜ୍ଞ ଋଷିମାନେ ଗଲେ
ନିଜ ଆଶ୍ରମକୁ ଫେରି,
କଚ ଆସୁଛନ୍ତି ବୋଲି ବାର୍ତ୍ତାଦୂତ
ଜଣାଇଲା ଆସିକରି ।୧୧୯।

କଚ ପହଞ୍ଚିଲେ ଅଶୋକ କାନନ
ଆନନ୍ଦ ଭବନେ ଆସି,
ତାଙ୍କ ସାଥେ ଆସି ଥାନ୍ତି କଣେ ପୁଣି
ମସ୍ତିଷ୍କ ବିକୃତ ଋଷି ।୧୨୦।

ଦୂତ ଆସି ଜଣାଇଲା ଶ୍ରୀ ଛାମୁରେ
କଚଙ୍କର ଆଗମନ,
ସତ୍ୱରେ ପାଛୋଟି ଆଣିବାକୁ ରାଣୀ
ଆଦେଶିଲେ ତତ୍କ୍ଷଣ ।୧୨୧।

କଚ ଉପଗତ ରାଜ ଦରବାରେ
ସଭିଙ୍କର ଜୟ ଘୋଷ,
ଉଚ୍ଛୁଳି ଉଠିଲା ସିନ୍ଧୁ କଲ୍ଲୋଳକୁ
ହେଳେ କରି ପରିହାସ ।୧୨୨।

ଦେବଯାନୀ ଉଠି ପ୍ରଣାମ କରିବା
ପାଇଁ ହେଉଥିଲେ ସଜ,
ସେହି ସମୟରେ ବିସ୍ମିତ ମନରେ
ପୁଚ୍ଛାକଲେ କଚରାଜ ।୧୨୩।

ବୃଷପର୍ବା ରାଜକେମା କେଉଁ ପରି
ହୋଇଛନ୍ତି ଉପଗତ ?
ବ୍ୟଜନ ହସ୍ତରେ ରାଜ ଦରବାରେ
କର ହୁଏ ସଞ୍ଚାଳିତ ।୧୨୪।

ଦେବଯାନୀ ହସି ଭାଷିଲେ ସେ ରାଜ-
କେମା ହୋଇ ଆଉ ନାହିଁ,
ଦାସୀ ରୂପେ ସାରା ଜୀବନ ତାହାର
କଟିବ ମୋ ପାଶେ ରହି ।୧୨୫।





ଶର୍ମିଷ୍ଠା ମୁଖକୁ ଅପଲକ ନେତ୍ରେ
ପାଗଳ ଋଷିଟି ତହିଁ,
ଚାହିଁ ରହିଥିଲେ ତାଙ୍କୁ ପୁଣି ରାଜା
ବିସ୍ମିତରେ ଥିଲେ ଚାହିଁ । ୧୨୬ ।

ନିଜର ଆଖିକୁ ବିଶ୍ୱାସ ନ କରି
ପାରୁନଥାନ୍ତି ଯଯାତି,
କେହି ନୁହେଁ ଏହି ପାଗଳ ଋଷିଟି
ତାଙ୍କ ଜ୍ୟେଷ୍ଠ ଭ୍ରାତା ଯତି । ୧୨୭ ।

ଦେବଯାନୀ ପ୍ରତି ଲକ୍ଷ୍ୟ କରି ଯତି
କହିଲେ ହେ ! ହେ ! ରାଣୀ,
ଏଦାସୀଟିକୁ ମୋତେ ଦେଇ ପାରିବୁକି
ନେବି ତାଙ୍କୁ ସାଥେ ପୁଣି । ୧୨୮ ।

ରାଜ ଦରବାରେ ପାଗଳା ଋଷିର
ସମ୍ବୋଧନ ରାଣୀ ଶୁଣି,
ରୋଷେ ରହସ୍ୟରେ ପଚାରିଲେ ଯ୍ୟଙ୍କୁ
ରଖିବେ କି କରି ରାଣୀ !। ୧୨୯ ।

ପାଗଳା ଋଷିଟି ଭାଷିଲେ ଏହାକୁ
ପୁରୁଷ ମୁଁ ଦେବି କରି,
ସକଳ ଯାତନା ଆଜିଠାରୁ ତାର
ଅଚିରେ ଯିବଟି ସରି । ୧୩୦ ।

ପର୍ଦ୍ଦା ଅନ୍ତରାଳେ ଥାଇ ରାଜମାତା
ଆଦେଶିଲେ ଭୃତ୍ୟ ଗଣେ,
ଗଳା ଧକ୍‌କା ଦେଇ ଛାଡ଼ି ଆସ ଏହି
ବାବାଜୀଙ୍କୁ ନେଇ ତେଣେ । ୧୩୧ ।

ଆଜ୍ଞା ପରମାଣେ ଭୃତ୍ୟ ଅଗ୍ରସର
ହୁଅନ୍ତେ କାର୍ଯ୍ୟ ସାଧନେ,
ଗରଜି ଯଯାତି ଭାଷିଲେ ସେ ଯତି
ରାଜା ଏହି ସିଂହାସନେ । ୧୩୨ ।



ଯତି ନାମ ଶୁଣି                    ରାଜ ମାତା ଲାଜ
ତେଜି ଆସି ସଭାସ୍ଥଳେ,
"ଯତି-ଯତି" କହି                    ରୂପକାନ୍ତି ଚାହିଁ
ମୂର୍ଚ୍ଛା ହେଲେ ତତ୍‌କାଳେ ।୧୩୩।

ଅତି ଆଦରରେ                    ରଖାଇଲେ ରାଜା
ଆନନ୍ଦ ଭବନେ ନେଇ,
କେତେ ଯତ୍ନ କଲେ                    ରାଜମାତା ଯତି
ମତି ସକାଡ଼ିବା ପାଇଁ ।୧୩୪।

ଦେବଯାନୀ ସିନା                    ମନେ ଭାବୁଥିଲେ
କଚତାଙ୍କ ସୁଖ ଦେଖି,
ଆପଣେ ଲଜ୍ଜିତ                    ହେବେ ଯେଣୁ ତାଙ୍କୁ
ପ୍ରେମେ ଦେଇଛନ୍ତି ଠକି ।୧୩୫।

ସେଥିପାଇଁ ସିନା                    କଚଙ୍କୁ ସ୍ୱାଗତ
ନିମନ୍ତ୍ରଣ ଥିଲେ କରି,
କଚ ସଙ୍ଗେ ଏହି                    ପାଗଳାଟା ଆସି
ସବୁ ସୁଖ ଦେଲା ସାରି ।୧୩୬।

ରାଜମାତା ଯେବେ                    ଜ୍ୟେଷ୍ଠ ପୁତ୍ର ବୋଲି
ଯତିକୁ କରିବ ରାଜା,
ଶର୍ମିଷ୍ଠାକୁ ମହାରାଣୀ                    କରି ନିଶ୍ଚେ
ମୋତେ ଦେବେ ବହୁ ଲଜ୍ଜା ।୧୩୭।

ଯତିର ଅନ୍ତର                    ଉପାୟ କାହାଣୀ
ନିରନ୍ତର ଚିନ୍ତାକରି,
ନିଜ ସ୍ୱାର୍ଥ ସିଦ୍ଧି                    ଉପାୟରେ ତାଙ୍କ
ବୁଦ୍ଧି ହେଉଥିଲା ଘାରି ।୧୩୮।

ଅର୍ଦ୍ଧରାତ୍ରି ବେଳେ                    ଦାସୀ ଏକ ଆସି
ଭାଷିଲା ରାଣୀ ମା ଶୁଣ,
ପାଗଳା ବାବାଜୀ                    ସହସା ନିଶୀଥେ
ହୋଇଗଲେ ଅନ୍ତର୍ଧ୍ୟାନ ।୧୩୯।





ଶର୍ମିଷ୍ଠା ଶୟନ　　　　କକ୍ଷରେ ପ୍ରବେଶି
ବସି ଯାଇ ତା ଉପରେ,
ତୋଟି ଚିପୁଥିଲେ　　　　ଚିତ୍କାର କଲାରୁ
ପଳାଇଲେ ଖରତରେ । ୧୪୦ ।

ମୂଷଳ ଧାରାରେ　　　　ବରଷୁଛି ବାରି
ଉଚ୍ଛୁଳେ ଯମୁନା ଜଳ,
ଖୋଜି ଖୋଜି କାହିଁ　　　　ମିଳୁନାହାଁନ୍ତି ସେ
ରାଜମାତା ଶୋକାକୁଳ । ୧୪୧ ।

ଦାସୀର ବାରତା　　　　ଦେବଯାନୀ ମନୁ
ଦୁଷ୍ଚିନ୍ତାକୁ କଲା ଦୂର,
ଅତି ହରଷରେ　　　　ମହାରାଣୀ ତାଙ୍କୁ
ଦେଲେ ବହୁ ପୁରସ୍କାର । ୧୪୨ ।

ବିଦାୟ ପୂର୍ବରୁ　　　　କଚ ଦେବ ଆସି
ଦେବଯାନୀ ପାଶେ ମିଳି,
ଶର୍ମିଷ୍ଠାକୁ ମୁକ୍ତି　　　　ଦେବାପାଇଁ କେତେ
ଦେବାପାଇଁ କଲେ ଅଳି । ୧୪୩ ।

ଦୟା ନାହିଁ ଯାହା　　　　ହୃଦୟରେ ତାହା
ପାଶେ ନିବେଦନ ବୃଥା,
ଦେବଯାନୀ କାହୁଁ　　　　ଶୁଣନ୍ତା କଚଙ୍କ
ଅନୁରୋଧ ପୂର୍ଣ୍ଣ କଥା । ୧୪୪ ।

ପୂର୍ବସ୍ମୃତି ହେଜି　　　　ଦେବଯାନୀ ସାଜି
ରଖିଥିଲେ ଯାହା ଯାହା,
ସୁବର୍ଣ୍ଣ ଆସନ　　　　ପ୍ରିୟ ପୁଷ୍ପମାନ
କଚ ନ ଘେନିଲେ ତାହା । ୧୪୫ ।

ତପ ଆଚରଣେ　　　　ଯିବେ ହିମାଳୟ
ସଂସାର କଲ୍ୟାଣ ପାଇଁ,
କହି କଚ ଦେବ　　　　ଦେବଯାନୀ ଠାରୁ
ଆସିଲେ ବିଦାୟ ନେଇ । ୧୪୬ ।



ଅଶୋକ ବନରେ ଶର୍ମିଷ୍ଠାଙ୍କୁ ଡ଼ାକି
ଦେଲେ କିଛି ଉପଦେଶ,
ମନେରଖ ତ୍ୟାଗ ବଳେ ହୁଏ ପ୍ରେମ
ମହିମାର ସୁବିକାଶ।୧୪୭।

ଯେଉଁ ତ୍ୟାଗ ବ୍ରତ ଧରିଛ ଜୀବନେ
ଯତନେ ପାଳିଲେ ତାହା,
ଆସିବ-ସମୟ ସୌଭାଗ୍ୟ ଉଦୟ
ହେବ ଖୋଲି ଭାଗ୍ୟ-ରାହା।୧୪୮।

ଯାଉଛି ମୁଁ ତପେ ଆସିବି ଲେଉଟି
ଯଥା କାଳେ ହେବ ଭେଟ,
ମନେରଖ ନିଜ ସାଧନାର ପଥେ
ରହିବ ହୋଇ ଅତୁଟ।୧୪୯।

ରାଜମାତା ଇଛା କରିଲେ ପ୍ରକାଶ
ବାନପ୍ରସ୍ଥେ ଯିବା ପାଇଁ,
ଯଯାତିଙ୍କ ଶତ ଅନୁରୋଧ ପଥେ
ନ ପାରିଲା ବାଧା ଦେଇ।୧୫୦।

କଚଙ୍କ ସହିତ ଗଲେ ରାଜ ମାତା
ସଂସାର ମମତା ଏଡ଼ି,
ଭୋଗ ବିଳାସର ପ୍ରାଚୁର୍ଯ୍ୟରୁ ଦୂରେ
କାମନା ବାସନା ଛାଡ଼ି।୧୫୧।

ଏତେ ଦିନେ ବୋଧେ ଅନୁଭବ କଲେ
ସମ୍ପଦରେ ଶାନ୍ତି ନାହିଁ,
ଆଶ୍ରମ ଜୀବନେ ଭଜନ କୀର୍ତ୍ତନେ
ଆତ୍ମା ପାରେ ମୁକ୍ତ ହୋଇ।୧୫୨।

❋ ❋ ❋





# ଚତୁର୍ଥସର୍ଗ

## ରସକୂଲ୍ୟା

ରାଜମାତା ରାଜ ବିଭୂତି ତେଜି
ଗଲେ ବାନପ୍ରସ୍ଥ ଦୀକ୍ଷାରେ ମଜ୍ଜି
ଦେବଯାନୀ ସର୍ବେସର୍ବା ସାଜିଲେ
ଯଯାତିଙ୍କ ସାଥେ ପ୍ରେମେ ମଜ୍ଜିଲେ -ସେ-
ନରହିଲା ଲାଜ-ଭୟ-
ନୟନ-କଟାକ୍ଷ-ତୀରେ ନରେଶଙ୍କ ହୃଦୟକୁ କଲେ ଜୟ।୧।

କୁବେର ଯାହାର ବିଭବ ଦେଖି
ଲାଜ ପାଇ ମନେ ହୁଅନ୍ତି ଦୁଃଖୀ
ସୁରପତି ଯାର ବିକ୍ରମେ ଭୟ
ଅମର ପୁରରେ ସଦା ସଭୟ-
ଯାହା ବିଳାସିନୀ -ବାମା-
ତ୍ରିପୁର ମୋହିନୀ ପ୍ରିୟା ଦେବଯାନୀ କିଛାର ସ୍ୱର୍ଗ ଉପମା।୨।

ଲାବଣ୍ୟ ନିଧିକୁ କୋଳରେ ଧରି
ଯଯାତି ବିମୁଗ୍ଧ ଦୃଷ୍ଟି ବିସ୍ତାରି
ଅଧରେ ଅଧର ସଧୀରେ ଯୋଖି
ଧରାଧର ହସି ଭାଷନ୍ତି ସଖି -ସେ-
ଆଜତୋରୂପକୁ ଦେଖି-
ରତି ପତି ଅତି ଚଞ୍ଚଳେ ମୋ ହୃଦେ ବିଶିଖ ଦେଉଛି ଯୋଖି।୩।

ଲାଜକୁଳୀଲତା ପରଶ ପାଇ
ଲାଜେ ସତେ ମୁଦି ଗଲା କି ହୋଇ;
ରାଜାଙ୍କ ବକ୍ଷରେ ରଖି ଆନନ
ମହାରାଣୀ ଶୁଣାଇଲେ ବଚନ
ହୋଇବେ ଏବେ ଜନନୀ-
ଶ୍ରବଣେ ନରେଶ ମାନସେ ଉଲ୍ଲାସ ଉଚ୍ଛୁଳି ଉଠିଲା ପୁଣି।୪।





ଗାଢ ଆଲିଙ୍ଗନେ ଧରି କଡ଼ାଇ
ସହସ୍ର ଚୁମ୍ବନ ଦେଲେ ବଧାଇ
ଅଭିଳାଷ ମାନ ପୂରଣ ଲାଗି
ନୃପତି ମାନସ ଉଠିଲା ଜାଗି
କଲେ ପୂର୍ବ ଆୟୋଜନ-
ରାଣୀଙ୍କ ମୁଖରୁ ଭାଷା ନ ଆସୁଣୁ ଯେପରି ହେବ ପୂରଣ।୫।

ରାଣୀଙ୍କ ଅନ୍ତରେ ଅଦ୍ଭୁତ ଆଶା
ଏ କାଳେ ଆସି ବସିଲା ସହସା;
କଣାଇଲେ କାନ୍ତ କରକୁ ଧରି
ଯମୁନା ପୁଳିନେ ବିହାର କରି
ନିଶିରେ ଆଶିବେ ଫେରି
ନରପତି ସ୍ୱୟଂ ବିକେହେବେ ସାଥେ ଋଷି ବେଶ ଏକ ଧରି।୬।

ଯଯାତିଙ୍କ ମନା ନ ମାନି ରାଣୀ
ଶ୍ରେଷ୍ଠ ଚିତ୍ରକର ଡ଼କାଇ ଆଣି
କାନ୍ତେ ଏକାନ୍ତେ ଋଷି ବେଶ କରି
ରଥେ ବସି ନିଶି ଗଲେ ବିହାରୀ
ଯମୁନା ତୀରେ ବିହରୀ-
ହାସ କୌତୁକରେ ପ୍ରେମ-ପୁଲକରେ କଟାଇଲେ ବିଭାବରୀ।୭।

ପ୍ରତ୍ୟାବର୍ତ୍ତନ କାଳେ ଦେବଯାନୀ
ମଜା କୌତୁକ କଥା ମନେ ଘେନି
ସାରଥୀକୁ ପଥେ ଦେଲେ ଆଦେଶ
ଅଶୋକ ବନରେ କର ପ୍ରବେଶ
ଶର୍ମିଷ୍ଠାର ପାଶେ ବସି-
ମୁନି ରାଜ କିଛି ଆଶିଷ ବଚନ ବର୍ଷିବେ ଶୁଭ ମନାସୀ।୮।

ରାଣୀଙ୍କ ଅଦ୍ଭୁତ ଖିଆଲ ଦେଖି
ମହାରାଜ ହେଲେ ମନରେ ଦୁଃଖୀ
ଧରାପଡ଼ି ଯିବା ଭୟରେ ମନ-
ହରିଣୀ ପ୍ରାୟେ ହେଲା ଛନ୍ନ ଛନ୍ନ- ସେ-
ଭାଷିଲେ ଚାଟୁ ବଚନ;
ଫେରିବା ପ୍ରାସାଦେ କାହିଁକି ଅଶୋକ-କାନନେ-ବଳାଅ ମନ।୯।





ରାଣୀଙ୍କ ଜିଦ୍ ବାରଣ ସମୀପେ
ରାଜ ଅନୁରୋଧ -ରମ୍ଭା ପାଦପେ
ଦଳି ଚଳିଲେ ଅଶୋକ କାନନେ
ଆନନ୍ଦ ଭବନର ସନ୍ନିଧାନେ
ହେଲେ ଆସି ଉପଗତ;
ରାଜପଥପରେ ରାଜ-ରଥ ଦେଖି ଦାସୀ ହେଲେ ସମାଗତ।୧୦।

ଦାସୀଗଣରେ ଆଦେଶିଲେ ରାଣୀ-
ମହାତପା ଏଯେ ଋଷି ଅଗ୍ରଣୀ
ଶର୍ମିଷ୍ଠା ପାଶେ ସସମ୍ମାନେ ନିଅ-
ଆଶୀର୍ବାଦ କିଛି ତାକୁ ଦିଆଅ-
ଚାରି ଘଡ଼ି ଛାଡ଼ି ମୁହିଁ;
ଆସି ପୁଣି ଏଥୁ ମୁନି ପୁଙ୍ଗବଙ୍କୁ ଯଥା କାଳେ ଯିବି ନେଇ।୧୧।

ରାଜାଙ୍କ ଅବସ୍ଥା ମନରେ ଗୁଣି
ମନେ ମନେ ହସି ଆସନ୍ତି ରାଣୀ
ଶର୍ମିଷ୍ଠା ପ୍ରତି ତୀବ୍ର - ଉପହାସ
ନିରାଶ ଜୀବନେ ଯାହା ଆଶିଷ ତା-
ପ୍ରତିଶୋଧ କଡ଼ା କ୍ରାନ୍ତିରେ-
ହୋଇବ ଆଦାୟ ବୋଲି ଦେବଯାନୀ ଆସୁଥାନ୍ତି ମନେ ଚିନ୍ତି।୧୨।

ଶର୍ମିଷ୍ଠା ଭବନେ ସାଧୁଙ୍କୁ ଦେଖି
ବିସ୍ମିତ ହୋଇ ଚାହାଁନ୍ତି ନିରେଖି
ଯାଙ୍କୁ ଦେଖିଲା ପରି ଲାଗେ କାହିଁ
ପୁଣି କ୍ଷଣେ ମନେ ଦ୍ୱିଧା ଆସଇ
ବସିବା ପାଇଁ ଆସନ;
ଅର୍ପଣ କରନ୍ତେ ସନ୍ୟାସୀ କହନ୍ତି ନାହିଁ ତହିଁ ପ୍ରୟୋଜନ।୧୩।

ଗିରି ଗୁହାବାସୀ ସନ୍ୟାସୀ ହୋଇ-
ରାଜ ଆସନେ ବସି ନଯୋଗାଇ
ମୃଗ ଚର୍ମ ପାରି-ବସିଲେ ତଳେ
ଶର୍ମିଷ୍ଠା ମଥା ନୁଆଁଇ ଭୂତଳେ
ଜଣାନ୍ତେ ନମ୍ର ପ୍ରଣତି;
ଆଶୀର୍ବାଦ ଦେଲେ ସିଦ୍ଧି ହେଉ-ହେଉ ସୁଯୋଗ୍ୟ ବର ପ୍ରାପତି।୧୪।



ଭାଗ୍ୟ ଯାର ଖାଇଅଛି ଦ୍ୱିକୂଳ
ଦାସୀ ବୃତ୍ତି ଯା ଜୀବନେ ସମ୍ବଳ
ତାର ଆଉ କେଉଁ ସିଦ୍ଧିବା ହେବ !
ଯୋଗ୍ୟ ବର ତାକୁ କାହୁଁ ମିଳିବ
ଏମନ୍ତ ଆଶିଷ ଶୁଣି
ଶର୍ମିଷ୍ଠାର ଦୁଇ ନୟନରୁ ଦୁଇଧାର ଝରିଗଲା ପାଣି ।୧୫।

ଯଯାତିଙ୍କ ତୈଳ ଚିତ୍ରର ଗଳେ
ଦେଖିଲେ ସଦ୍ୟ ପୁଷ୍ପ ମାନ ଝଳେ;
ଧ୍ୟାନ ମୁଦ୍ରା ଢଙ୍ଗ କିଛି ଆଚରି-
ସନ୍ୟାସୀ ଭାଷିଲେ-ଶୁଣ-ସୁନ୍ଦରୀ-ଏ
ରାଜାଙ୍କୁ କରୁଛ ପ୍ରେମ-
ମୋର ଆଶୀର୍ବାଦେ ଅଚିରେ ତୁମ୍ଭର ପୂର୍ଣ୍ଣହେବ ମନସ୍କାମ ।୧୬।

ଭୟେ ଶର୍ମିଷ୍ଠାର ଥରିଲା ଦେହ
ଶୁଖିଗଲା ରକ୍ତ ଶୁଖିଲା ମୁହଁ
ଦେବଯାନୀ ତୁଲେ ବିବାଦ କରି
ହୋଇଅଛି ଆଜି ସେ ଏତେ ସରି,
ପୁଣି ଯଯାତିଙ୍କୁ ପ୍ରେମ-
କରିଲେ ଜୀବନ ଥାଉଁ ଥାଉଁ ନିଷ୍ଟେ ଭେଟିବ ଅଚିରେ ଯମ ।୧୭।

ଋଷି ଜାଣିଲେ ତା ମନର ବ୍ୟଥା-
କହିଲେ ଶର୍ମିଷ୍ଠେ ନକର ଚିନ୍ତା;
ତୁମ ଭାଗ୍ୟାକାଶୁ ଘୁଞ୍ଚିଛି ରାହୁ-
ସୁଯୋଗ ବେଳା ଦିଶେ ଦାଉ ଦାଉ;
ମନୋଭିଷ୍ଟ ହେବ ପୂର୍ଣ୍ଣ
ପ୍ରତିଶୋଧ ବହ୍ନି ହେବ ନିର୍ବାପିତ ଦେବଯାନୀ ଦର୍ପ ଚୂର୍ଣ୍ଣ ।୧୮।

ସଙ୍ଗିନୀ ହୋଇ ସେ କରିଛି ଯାହା
କେଉଁ ଦଇବ ବା ସହିବ ଏହା;
ସେ ପାଇଁ ବିଧାତା ପଠାଇ ମୋତେ-
ସାନ୍ତ୍ୱନା ବାଣୀ ଶୁଣାଉଛି ତୋତେ-
ଶର୍ମିଷ୍ଠେ ! ଏ କଥା ଭାବ ଗୋ
ଅଚିରେ ରାଜନ ଭେଟ ହେବେ ଆସି ସତ ମିଛ ପରଖିବ ।୧୯।



ଏହିକି ତୁମର ଶୋଇବା ଘର ?
ହଁ ବୋଲି ଶର୍ମିଷ୍ଠା ଦେଲେ ଉତ୍ତର !
"ସୁଡ଼ଙ୍ଗ ଦ୍ୱାର ଏ ଘରକୁ ଅଛି"-
ସେ ସବୁ କଥା ମୁଁ ନ ଜାଣେ କିଛି
ଶୁଣି ଋଷି ଦେଲେ ହସି-
ଗୁପ୍ତଦ୍ୱାର ଉନ୍ମୋଚନର କୌଶଳ ଦେଲେ ସେ ତହୁଁ ପ୍ରକାଶି ।୨୦।

ମାତା ପିତା ସ୍ନେହେ କିନାମ ଧରି
ଡ଼ାକନ୍ତି ତୁମକୁ ଆଦର କରି ?
'ଶମା' ବୋଲି ସ୍ନେହେ ଡ଼ାକନ୍ତି ମୋତେ
ଶର୍ମିଷ୍ଠା କହିଲେ ଭୀତ-ଚକିତେ,
ରାଜା ଧରି ସେହି ନାମ
ଡ଼ାକିବେ ଏ ମୋର ଭବିଷ୍ୟତ ବାଣୀ ଶୁଣ ସୁନ୍ଦରୀ ଲଲାମ ।୨୧।

ଶର୍ମିଷ୍ଠାର ମନ-ଗହନ କଥା
କହି ସାଧୁ ଆଉଁଷି ଦେଲେ ମଥା;
ହତାଶା-ଜୀବନେ ଆଶାର ବୀଜ-
ବୁଣି ଦେଲେ କି ଋଷି ମହାରାଜ
ଲାଜେ ଶର୍ମିଷ୍ଠା ଝାଉଁଳି,
ତ୍ରିକାଳ ଋଷି-ମହାରାଜ ବୋଲି ପାଦେ ହେଲେ ନିଉଛାଳି ।୨୨।

ମହାରାଣୀ ଏଣେ ରଥରେ ବସି
ଅଶୋକ ବନରେ ମିଳିଲେ ଆସି;
ଦାସୀ ଆସି ଜଣାଇଲା ବାରତା
ଉଠିଲେ ଛଦ୍ମ ବେଶୀ ଊର୍ଦ୍ଧ୍ୱରେ ତା
ରଥରେ ବସିଲେ ଯାଇଁ-
କିପରି ଲାଗିଲା ଋଷିଙ୍କ ସାନିଧ୍ୟ ରାଣୀ ପୁଛାକଲେ ତହିଁ ।୨୩।

ମଥାନତ କରି ତଳକୁ ଚାହିଁ
ଲାଜେ ଶର୍ମିଷ୍ଠା କହନ୍ତି ଶୁଣାଇଁ
ମହାରାଣୀ ! ତୁମ ସାଧୁଙ୍କ ଗୁଣ
ବର୍ଣ୍ଣିଲେ ହେବ ସାକ୍ଷାତେ ପୁରାଣ
ସତେକି ସେ ଘଟବାସୀ
ସୁଯୋଗ ଦେଲେ- ତାଙ୍କ ପାଦ ତଳେ ମୁଁ ହେବି ଆଜୀବନ ଦାସୀ ।୨୪।



-ହେଉ-ହେଉ ବୋଲି ବିଦ୍ରୂପେ ହସି
ଲେଉଟିଲେ ଦେବଯାନୀ ସୁକେଶୀ
ପୁଛିଲେ ରାଜାଙ୍କୁ କରି ରହସ୍ୟ
ଶର୍ମିଷ୍ଠାକୁ ଦେଲେ କେଉଁ ଆଶିଷ
ଉତ୍ତରିଲେ ନରପତି-
"ମନୋଭିଷ୍ଟ ସିଦ୍ଧ ହେଉ-ହେଉ ତୋର ସୁଯୋଗ୍ୟ ବର ପ୍ରାପତି।୨୫।

ବଡ଼ପଣ ପାଇ କରେ ଯେ କୂଟ-
କହେ ବଚନ ନିଷ୍ଠୁର ନିରାଟ
ସୁଖ ପାଏ ଅନ୍ୟକୁ ଦୁଃଖ ଦେଇ
ତା ପରି ନିର୍ବୋଧ ସଂସାରେ ନାହିଁ-
ନିଜ ପାଇଁ ଖୋଳେ ଗାତ-
ପରିଶେଷେ ତାର ବଡ଼ ପଣ ତୁଟେ ହରାଇ ମାନ ମହତ।୨୬।

ଶର୍ମିଷ୍ଠା କାମ ପାଇଁ - ଦେବଯାନୀ
ଦେବଯାନୀ କାମରେ ନୃପ ମଣି
ଭାବି ଭାବି ଏହି ପରି ପଥରେ
ମିଳିଲେ ପ୍ରାସାଦେ ଆସି ରଥରେ
ନିଶି ହେଲା ଅବସାନ-
ପିତାଙ୍କ ଦର୍ଶନ ପାଇଁ ଦେବଯାନୀ ଯିବାକୁ କରିଲେ ମନ।୨୭।

ତପସ୍ଥଳେ ପିତୃ ଦର୍ଶନ ସାରି
ଅଳପ ଦିନରେ ଆସିବେ ଫେରି
କହି ହିମାଳୟ ହେଲେ ବାହାର
ରଥରେ ଗଲେ ଦାସୀ-ପରିଚାର
ଯଯାତି ରହିଲେ ଏକା
ଶର୍ମିଷ୍ଠାର ସ୍ମୃତି - ଫଳକେ ସାଧୁଙ୍କ ବାଣୀ ଟାଣିଲାକି ରେଖା।୨୮।

ଶର୍ମିଷ୍ଠାର ପ୍ରତି ସହାନୁଭୂତି -
ଆରମ୍ଭରୁ ରଖିଥିଲେ ନୃପତି
ମହାରାଣୀଙ୍କର ଅନୁପସ୍ଥିତି-
କଲା ସେ ସ୍ନେହର ପୁନରାବୃତ୍ତି-
ଉଚ୍ଛନ୍ନ ନୃପତି ମତି-
କେତେବେଳେ ହେବ ଦିବା ଅବସାନ ଆସିବ ମିଳନ ରାତି।୨୯।





ଦେବଯାନୀ ଯିବା ବାରତା ଜାଣି
ଶର୍ମିଷ୍ଠା ହୃଦୟେ ସାଧୁଙ୍କ ବାଣୀ;
ବାରମ୍ବାର ଛାଡୁଥିଲା କୁହାଟ
ଘନ ଘନ ମନ କଲା ଉଚ୍ଚାଟ
ସଜାଇଲା ନିଜ ତନୁ-
କି ଅବା କନ୍ଦର୍ପ ଯୁଦ୍ଧେ ଯିବା ପାଇଁ ସଜାଡ଼ିଲା ଫୁଲ ଧନୁ।୩୦।

ଉଦ୍ୟାନୁ-ସୁବାସ କୁସୁମ ଆଣି
ଯତ୍ନେ ମାଳା ଗୁନ୍ଥି ସଜାଇ ବେଣୀ
କଚ ଦତ୍ତ ରଙ୍ଗ ଦୁକୂଳ କାଢି-
ହେମାଙ୍ଗିନୀ ଦେଲା ତନୁରେ ବେଢି
ବିଜୟିକି ଫୁଲ ରାଣୀ-
କମଳ ନୟନୀ - ଜବା ଅଧରୀ -ସେ ତିଳ ପୁଷ୍ପ ନାଶା ଜିଣି।୩୧।

ପ୍ରଥମ ପ୍ରହର ସରିଲା ନିଶି
ଶର୍ମିଷ୍ଠା -ଆକାଶେ ଯଯାତି ଶଶୀ
ଦିଶିବାର କିଛି ପଡୁନି ଜଣା
ଋଷି ବଚନ କି-ହାସ୍ୟ-ବୋଲଣା
ଛଟ ପଟ ହୁଏ ମନ-
ଖଟ ଖଟ କେବେ ଶୁଭିବ ସୁଡଙ୍ଗ ପଥେ ରଖିଥାଏ ଧ୍ୟାନ।୩୨।

ଆଶା ନିରାଶାର ଘୋର ସଂଗ୍ରାମ
ହୃଦୟ-ଅଙ୍ଗନରେ ଅବିରାମ
ଲାଗିବାରୁ ଉଠା-ବସା କରାଇ
କଣ୍ଠ ତଟ ଦେଉଥାଏ ଶୁଖାଇ-
ମାରମାର -ଗଣଗଣ
ପଣ ପଣ ହୋଇ ଲୋମେ ଲୋମେ ଯାଇ ଦହି ଦେଉଥିଲା ପ୍ରାଣ।୩୩।

ଆସିବେ ବୋଲି ଯଯାତି ନୃପତି
ସଜାଡ଼ି ଥିଲା ଯତନେ ସୁପାତି
ଜାତି ଜାତି ଫୁଲ ଶେଯେ ବିଛାଇ-
ନିଶାର୍ଦ୍ଧ ହେଲା ଆସି ଚାହିଁ ଚାହିଁ -
ଶମା ଶମା ଡ଼ାକ ଶୁଣି-
ଏକା ନିଶ୍ୱାସରେ ଗୁପ୍ତ ଦ୍ୱାର ଖୋଲି ଦେଖିଲା ଆଗେ ନୃମଣି।୩୪।





ବାମନ କି ସତେ ପାଇଲା ଚାନ୍ଦ
ଚକ୍ଷୁ ପାଇଲା କି ଆଜନ୍ମ ଅନ୍ଧ
ମରୁ ଭୂମିରେ ଫୁଟିଲା କମଳ
ତୃଷାତୁର କଣ୍ଠେ ମଧୁର ଜଳ କି
ବିହି ଦେଲା ହୋଇ ତୋଷ;
ସେପରି ଆନନ୍ଦ -ଉଲ୍ଲାସେ ଉଚ୍ଛୁଳି ଉଠେ ଶର୍ମିଷ୍ଠା ମାନସ ।୩୫।

କର ଧରି-ଧୀରେ ପଲଙ୍କ ପରେ-
ବସାଇ ପୁଷ୍ପ ମାଳ ଦେଇ ଗଳେ
କସ୍ତୁରୀ ଚନ୍ଦନ କପାଳେ ଦେଇ
ବନ୍ଦାପନା କଲେ ମନ ମନାଇଁ-
ରୋହିଣୀ ଯେସନେ ଶଶି-
ଶର୍ମିଷ୍ଠାଙ୍କ ପ୍ରୀତି ଗଭୀରତା କଳି ମୃଦୁ ମୃଦୁ ରାଜା ହସି ।୩୬।

ଆଲିଙ୍ଗନ କଲେ ବକ୍ଷରେ ଧରି
ଗଣ୍ଡେ ଚୁମ୍ବନ ଆଙ୍କିଲେ ବିସ୍ତାରି
ଅଧର ସୁଧାରେ ବଳାଇ ଆଶ
ମଧୁପ ପ୍ରାୟେ ଚୁମ୍ବିଲେ ଉଶ୍ୱାସ
ରୋମାଞ୍ଚିତ କଳେବର;
ମନମଥଶରେ ମନ ମଚ୍ଛି ହୋଇ ଝରିଲା ପୀରତିଝର ।୩୭।

ଶର୍ମିଷ୍ଠାଙ୍କ ଗଭା-କୁସୁମ ବାସ
ଲୁଟି-ସୁବାସ, ଭାଷନ୍ତି ନରେଶ;
ଦେବଯାନୀ ସିନା ମୋ ପାଟରାଣୀ-
ପାରିନାହଁ ସେ ମୋ ହୃଦକୁ କିଣି-
ଐଶ୍ୱର୍ଯ୍ୟ-ମଦିରା ପିଇ-
ମୋ ହୃଦୟ ପ୍ରୀତି-ପାରାବାର ରସେ ବେଳା ଭୂଇଁ ଛୁଇଁ ନାହିଁ ।୩୮।

ପ୍ରେମ ଅନୁରାଗ ବଡେ ତ୍ୟାଗରେ
କାହୁଁ ସେ ମିଳିବ ରାଜ ଭୋଗରେ
ପ୍ରେମ ପାଇଁ କଷ୍ଟ ସହି ଯେ ନାହିଁ-
ପ୍ରୀତି- ସୁଧା ସ୍ୱାଦ ସେ ଚାଖି ନାହିଁ
ନୁହେଁ-ପ୍ରେମିକରେ ଗଣା-
ପ୍ରକୃତ ପ୍ରେମର ରସ ଆସ୍ୱାଦନ -ଶର୍ମିଷ୍ଠା ତୁମକୁ ଜଣା ।୩୯।





ଧନ ସମ୍ପଦରେ ହୋଇ ପ୍ରୟସୀ
ବିଭବ ପାଶେ ସେ ହୋଇଛି ଦାସୀ
ଶୁକ୍ରାଚାର୍ଯ୍ୟଙ୍କର ଭୟରେ ମୁହିଁ-
ପ୍ରତିରୋଧ ତାକରି ପାରୁନାହିଁ
ନୋହିଲେ ତୁମକୁ ନେଇ
କିଛାର ଏରାଜ ସିଂହାସନ ମୋର କୋଳରେ ଥାନ୍ତି ବସାଇ।୪୦।

ରାଜ ଜେମା -ରାଜ ଯଯାତିଙ୍କର-
ଶୁଣି ଶୁଣି ପ୍ରୀତି-ବୀଣା-ଝଙ୍କାର,
ଯାମିନୀ-କାମିନୀ ହୋଇ ଅବଶ
ଉଷା-ପାରାବାରେ ଦେବାରୁ ଝାସ-
ଗୁପ୍ତ ଦ୍ୱାର୍ ପଥ ଦେଇ -ଯେ-
ବିଦାୟ୍ -ମାଗିଲେ ରାଜା ପୁଣି ନିଶି ଆସିବାକୁ ଭାଷା ଦେଇ।୪୧।

ଶର୍ମିଷ୍ଠାଙ୍କ ମନେ ନବାନୁଭୂତି
ନାରୀ ଜୀବନର ଯହିଁ ତୃପତି
ସ୍ମୃତି ଲତାରେ ବାରମ୍ବାର୍ ଫୁଟି
ସୁବାସ ହୃଦ ଉଦ୍ୟାନେ ଉକୁଟି
ଉଛୁଳାଇ ଦେଲା ପ୍ରାଣ-
ଯେସନେ ପୂର୍ଣ୍ଣିମା ନିଶାକର- କର ଲଭି ସିନ୍ଧୁ ଜଳ ଜାଣ।୪୨।

ଆନକାର୍ଯ୍ୟରେ ନବଳଇ ମନ-
କେବଳ ପ୍ରାଣ ପ୍ରିୟ ଦରଶନ-
ଆଶାରେ ଯୋଷାମନ ଗଲା ଲାଖି
ବସି ବସି ଚିତ୍ର ପଟ ନିରେଖି
ବିହ୍ୱଳେ ଦେଇ ଚୁମ୍ବନ -
ଆଲିଙ୍ଗନ କରି କରି ସଜାଇଲା ପୁଣି ନିଜ ଅପଘନ।୪୩।

ରାଜାଙ୍କର ତୈଳ ଚିତ୍ରକୁ ଚାହିଁ
କହେ ଯୋଷା ମଣି ଅଶ୍ରୁ ଝରାଇ
ଜୀବଧନ ମୋର ନାହିଁକେ ସାହା
ତୁମବିନୁ ଦୁଃଖେ କହିବ ଆହା
ପିଞ୍ଜରାବନ୍ଧ ବିହଙ୍ଗୀ-
ଦେବଯାନୀ-ବ୍ୟାଧ-କ୍ରୂର-ଶରାଘାତେ ହୋଇଛି ଆଜି ନିସଙ୍ଗୀ।୪୪।



ମୋ ପ୍ରେମ ପାଦପ ଗୋଲାପ ତୁମେ-
ଦେବଯାନୀ କଣ୍ଟା ଦହେ ମରମେ
ଅଶେଷ କ୍ଷତ ଯନ୍ତ୍ରଣାକୁ ସହି
କେବଳ ବଞ୍ଚିଛି ତୁମରି ପାଇଁ
ବୁଝିବ କି ମୋର ଦୁଃଖ
ଦୀନା-ଦାସୀ ପ୍ରତି ଦୟା ବିତରିକି ଦେବ ଆଲିଙ୍ଗନ ସୁଖ।୪୫।

ରୂପେ ଦେବଯାନୀ ମୋଠାରୁ ସାର,
ନିଷ୍କଣ୍ଟକ ତାପଥ ପରିଷ୍କାର
ତଥାପି ସେ ତୁମ ହୃଦୟେଶ୍ୱରୀ
ହୋଇ ପାରି ନାହିଁ, ହୋଇ ଚତୁରୀ
କଚ ପାଶେ ତାର ମନ-
ବନ୍ଧା ପଡ଼ିଥିଲା ଜାଣେ ବାଲ୍ୟ କାଳୁ ହୋଇଲା ନାହିଁ ପୂରଣ।୪୬।

ମାତ୍ର ମୁଁ ତୁମକୁ ହୃଦୟାସନେ
ବସାଇ ପୂଜିବି ନିତି ଗୋପନେ
ବାଧା ବିପତ୍ତି ହସି ହସି ସହି
ରହିବି କା ଆଗେ କିଛି ନ କହି
ଜାଣି ଅଛି ଯେଣୁ ମୁହିଁ-
ଅଭାଗିନୀ ମୁଁ ! ମୋ କପାଳେ ବିଧାତା ଏହିପରି ଅଛି ଲିହି।୪୭।

ପିତା ମୋର ଶୁକ୍ରାଚାର୍ଯ୍ୟଙ୍କ ଡ଼ରେ
ସହନ୍ତି ଯାତନା ହୃଦ ମଧ୍ୟରେ;
ତାଙ୍କ ଭୟେ ମଧ୍ୟ ତୁମେ ନିରବ
ମୋ ପରେ ପଡୁଛି ସବୁ ପ୍ରଭାବ-
ସହିବାକୁ ଦିଅ ବଳ-
ପ୍ରେମ-ଧର୍ମ-ନାବେ ବସି ପାରି ହେବି ବଡନ୍ତା ନଇ-ଦ୍ୱିକୂଳ।୪୮।

ବିହି ଯାହାକୁ କରିଛି ସୁନ୍ଦର
ବେଶ ବିନ୍ୟାସତା କିଦରକାର !
ଶର୍ମିଷ୍ଠା ପାଶେ ବା ଭୂଷଣ କାହିଁ
ତଥାପି କେ ତାକୁ ପାରିବ ଚାହିଁ
ସ୍ୱଭାବ ସୁଲଭ ଅଙ୍ଗ
ଶାଣିତ-ଶାୟକ ସତେକି ସେ ଏକ ସାଇତି ଅଛି ଅନଙ୍ଗ।୪୯।





ରାଜକାର୍ଯ୍ୟରୁ ବିଶ୍ରାମର କାଳେ
ରାଜା ବସି ଭାବୁଥାନ୍ତି ନିରୋଳେ
ଏଣେ ଶର୍ମିଷ୍ଠା ତେଣେ ଦେବଯାନୀ
କିଏ ଯମୁନା କିଏ ମନ୍ଦାକିନୀ
ହେବ କି ନାହିଁ ସଙ୍ଗମ
ପରୀକ୍ଷାରେ ଜଣାଯିବ ଦିନେ ବେଶି ଅଟେ କାହା ପରାକ୍ରମ।୫୦।

ଶର୍ମିଷ୍ଠାଙ୍କ ଭକ୍ତି-ପ୍ରୀତି-ସୁବାଣୀ
ନୃପତିଙ୍କ ଚିତ୍ତ ନେଇଛି କିଣି-
ପୁନର୍ମିଳନର ମୁହୂର୍ତ୍ତ ପାଇଁ
ଘଡ଼ି ଘଡ଼ି ଯାଇ ଚାହାଁନ୍ତି ଛାଇ
ରବି ଅସ୍ତ ହେବେ କେବେ-
ସନ୍ତାପିତ-ତାଙ୍କ ହୃଦୟେ ଶର୍ମିଷ୍ଠା ପ୍ରୀତି ଜଳ ଢାଳି ଦେବେ।୫୧।

ଦୂତ ଆସି ଜଣାଇଲା ବାରତା
ମହାରାଣୀ ହୋଇଛନ୍ତି ଅସୁସ୍ଥା
ମାସ-ଦୁଇ-ତିନି ବିଶ୍ରାମ କରି
ପିତାଙ୍କ ନିକଟୁ ଆସିବେ ଫେରି
ଶୁଣି ରାଜା ହେଲେ ତୋଷ
ଶର୍ମିଷ୍ଠାଙ୍କ ପ୍ରେମେ-ଭାଷିବାକୁ ବିହି ଦେଲେ କି ଶୁଭ ଆଶିଷ।୫୨।

ମଣି କାଞ୍ଚନର -ଶୁଭ-ସଂଯୋଗ
ଗୁପତେ ନିଶିଧେ ଏକାନ୍ତେ ଯୋଗ;
ଚାଲିଲା ଦିନ ପରେ ଦିନ ଗଡ଼ି
ପ୍ରୀତି-ବଲ୍ଲରୀର ପ୍ରଶାଖା ବଢି
ଯଥା କାଳେ ଧରି କଷି;
ବୃଷପର୍ବା ରାଜକେମା -କମନୀୟ-କାନ୍ତି ଅତି ପରକାଶି।୫୩।

ପ୍ରୀତି-ବତ୍ସଳାକୁ ପ୍ରୀତ୍ୟୁପ ହାର
ପାଇଁ ରାଜାଧରି ସୁମିଷ୍ଟ ଫଳ
ପ୍ରୀତି ଉତ୍ସବର ଶେଷେ ଖୁଆଇ
ଦେବାକୁ -ଦିଅନ୍ତେ କର ବଢାଇ
ଶମା କରେ ନାହିଁ ନାହିଁ-
ମହାରାଜ ଦେଇଛନ୍ତି ଯେଉଁ ଫଳ ତାଠାରୁ କି ବଡ଼ ଏହି।୫୪।



କି ଫଳ ଦେଲିରେ ? ପ୍ରାଣ ବାନ୍ଧବୀ !
"ଦେଖିନି- ଆହୁରି- କାହୁଁ ଜାଣିବି"
ଦେଖି କହ ସେକି -ଯ୍ୟ ଠାରୁ ବଡ଼ ?
'ନ' ମାସ ଆହୁରି ଅପେକ୍ଷା କର
କହି ଲାଜେ ଦେଲେ ହସି-
ଶର୍ମିଷ୍ଠା ସାଗରେ ମିଶିଗଲେ ହସି ହସ୍ତୀନା ଆକାଶ ଶଶୀ।୫୫।

ସମୟ-ଚକ୍ରର ଗତି-ବିଷମ
କେବେ ଶୀତ କେବେ ଭାରି ଗରମ
ଓଳିଏ ଅନ୍ଧାର ଓଳିଏ ଦିନ
ଦୁଃଖ-ପରେ ସୁଖ ତାର ବିଧାନ-ସେ
ଅଟେ ମହାବଳବାନ !
ପହଞ୍ଚାଇ ଦେଲା; ପିତାଙ୍କ ନିକଟୁ ଆଣି ଦେବଯାନୀ-ଯାନ।୫୬।

ଗଜ-ଦନ୍ତ-ପଲଙ୍କରେ ପହୁଡ଼ି
ଥାନ୍ତି ଦାସୀଗଣ ଚୌପାଶେ ବେଢି;
କରୁଥାନ୍ତି ପଙ୍ଖା-ଚାମର ତହିଁ
ମହାରାଣୀଙ୍କର ମନକୁ ଚାହିଁ -
ତଥାପି ମାରନ୍ତି ହାଇ
ଗର୍ଭସ୍ଥ ଶିଶୁର ଦୁଃସହ ପ୍ରହାର ବାରମ୍ବାର ସହି ସହି।୫୭।

ଦେବ ଦାନବ କି କଲେ କନ୍ଦଳ
ଉଛୁଳିଲା ସପତ ସିନ୍ଧୁ ଜଳ
ନବଜାତ ହେଲେ ବିମଳ ଶଶି
ହସ୍ତିନା ଆକାଶ ଉଠିଲା ହସି-
ଦାସୀମାନେ ଗଲେ ଧାଇଁ-
ମହାରାଜ ! ଆଜି -ପୁତ୍ରର ଜନକ ଦିଅନ୍ତୁ ଆମ-ବଧାଇ।୫୮।

ଶୁଣି ଯଯାତିଙ୍କ ମନ ପ୍ରସନ୍ନ
ମୋଡ଼ନ୍ତି ସ୍ନେହରେ କା ନାକ କାନ
କିଏ ଅଙ୍ଗୁରୀୟ- କିଏ ବା ମାଳି
କିଏ ପାଉଥାଏ-ସୁଶ୍ରାବ୍ୟ ଗାଳି-
ଅଳି କଲେ ତୋଷ ହୋଇ-
ସାରା ରାଇଜରେ ଉଲ୍ଲାସର ଧ୍ୱନି ଶୁଭେ ତୁହାଇ ତୁହାଇ।୫୯।





ଉଲ୍ଲାସର-ସ୍ରୋତ-କ୍ରମଶଃ ବଢି
ନାମ କରଣ ଯଜ୍ଞ କୁଣ୍ଡେ ପଡ଼ି
ଉଛୁଳାଇ ଦେଲା ଶୋଭା ଆସର
ରାଜକୀୟ ପରିପାଟୀ ବେଭାର
ବେଦମନ୍ତ୍ରର ନିର୍ଘୋଷ
ସୁବେଶର ସଙ୍ଗେ-ସୁବାସ-ସଂଯୋଗ କଲା ହୋମ ଅଗ୍ନିବାସ ।୬୦।

ଦିବ୍ୟ ଭୂଷଣରେ ହୋଇ ଭୂଷିତା
ହୀରା-ନୀଳା-ମଣି-ମାଣିକ୍ୟ ଯୁକ୍ତା
ଛତ୍ର-ଚାମର-ଶଙ୍ଖ ହୁଳ ହୁଳି
କସ୍ତୁରୀ-ଚୁଆ-ଚନ୍ଦନ ହାବେଳି
ବିଜେ ହେବେ ମହାରାଣୀ-
ବିରାଜିବେ ରାଜା ଯଯାତିଙ୍କ ବାମେ ବସି ଧରି ପୁତ୍ରମଣି ।୬୧।

ନବଜାତକର ନାମ କରଣ
କରି ଆଶିଷ ଦେବେ ଋଷିଗଣ
ଏ ଆନନ୍ଦ ପରିବେଶ ମହକ
ହେବ ଶର୍ମିଷ୍ଠାର ହୃଦ ଦାହକ-ତା-
କାଣି ଡ଼କାଇଲେ ରାଣୀ
ରାଜ କୁମାରଙ୍କୁ ଦେଖି ଯିବା ପାଇଁ ତାଙ୍କୁ ଗଲେ ଦାସୀ ଆଣି ।୬୨।

କଚ ଦତ୍ତ ରଙ୍ଗ ଦୂକୁଳ କାଢି
ସାବଧାନତାର କଠୋଉ ମାଡ଼ି
ହୃଦୟରେ ଧୈର୍ଯ୍ୟ ସାହସ ସଞ୍ଚି
ଭିତରୁ ବାହାରୁ ପକାଇ କଞ୍ଚି
ଶର୍ମିଷ୍ଠା ହେଲେ ବାହାର-
ଛେଳିକୁ ସତେକେ ପାଣିକୁ ଟାଣୁଛି ପଛରୁ ଦେଇ ପାହାର ।୬୩।

ପୁତ୍ର ନାମ "ଯଦୁ" ରଖିବା ପାଇଁ
ମହାରାଣୀ ଦେଲେ ଇଚ୍ଛା ଜଣାଇଁ
ସେହି ନାମ କହି ପୁତ୍ରର କାନେ
ଆଶିଷ ବରଷିଲେ ତପୋଧନେ
ଅକ୍ଷତ ପୁଷ୍ପ ପକାଇ
ଏକାଳେ ଶର୍ମିଷ୍ଠା ରାଜ ଦରବାରେ ଉପସ୍ଥିତ ହେଲେ ଯାଇ ।୬୪।



ଶର୍ମିଷ୍ଠାଙ୍କ ଗତି ବିଧିକୁ ଚାହିଁ
କିଛି ନୂଆ ନୂଆ ଆଭାସ ପାଇ
ସନ୍ଦେହ ଆସିଲା ରାଣୀଙ୍କ ମନେ,
କହିଲେ ମିଶିବୁ ମୋତେ ଭବନେ
ଉତ୍ସବ ହୋଇଲେ ଶେଷ
ବାର୍ତ୍ତାଳାପ କିଛି କରିବାରେ ମୋର ବଳିଅଛି ଅଭିଳାଷ।୬୫।

ମହାରାଣୀଙ୍କର ଆଦେଶ ପାଇ
ରାଣୀ ହଂସପୁରେ ଶର୍ମିଷ୍ଠା ଯାଇ
ଭେଟିଲେ ରାଣୀଙ୍କୁ ଉତ୍ସବ ଅନ୍ତେ
ଦାସୀଗଣେ ବିଦା କରି ଏକାନ୍ତେ
ଦେବଯାନୀ ହୋଇ ରୋଷ-
ପଚାରିଲେ ତୋର ଅଶୋକ କାନନେ ହୋଇଛି କି ଗର୍ଭବାସ।୬୬।

କେଉଁ ଦାସ ମନ ଦେଲୁ ରସାଇ;
ମାନ ମହତକୁ ଦେଲୁ ଭସାଇ !
ବ୍ୟଭି ଚାରିଣୀ ବୃତ୍ତିରେ ମଜ୍ଜିଲୁ
କେଉଁ ପୁରୁଷର ପ୍ରୀତି ଭଜିଲୁ-
କହ ତା ନାମ ପ୍ରକାଶି
ତା ନୋହିଲେ ରାଜ ଦରବାରେ ତୋର ଗଳେ ପିନ୍ଧାଇବି ଫାଶି।୬୭।

ଭୟେ ଶର୍ମିଷ୍ଠାଙ୍କ ଥରୁଛି ଦେହ
ହେଉଛି କି ନାହିଁ ରକ୍ତ ପ୍ରବାହ
କହିଲେ ନୁହେଁ ମୁଁ ବ୍ୟଭିଚାରିଣୀ-
ବୃଥା ଅପବାଦ ମୋତେ ଦିଅନି-
ଜଣେ ଋଷିଙ୍କ ଆଶିଷ,
ଲାଭ କରି ତାଙ୍କ କଲ୍ୟାଣରୁ ମୋର ହୋଇଅଛି ଗର୍ଭବାସ।୬୮।

କେଉଁ ଋଷି -କଚ ଅଟନ୍ତି କିସେ ?
ଅବା ପାଗଳ ସନ୍ନ୍ୟାସୀ ଯତି ସେ ?
ଶର୍ମିଷ୍ଠା ବୋଇଲେ ତାଙ୍କର ନାମ
ଉଚ୍ଚାରିବାକୁ ମୁଁ ପରା ଅକ୍ଷମ
ନାହିଁ ମାତ୍ର ମୋର ଦୋଷ
ବ୍ୟଭିଚାରିଣୀ ଅପବାଦ ଦିଅନା ବହି ମନେ ବୃଥା ରୋଷ।୬୯।





ଶର୍ମିଷ୍ଠାଙ୍କ ଗର୍ଭ ବେଦନା ଭାର
ଦିନକୁ ଦିନ ବଢେ ଖରତର;
କେତେ ନୂଆ ଆଶା ଜାଗେ ମାନ ସେ-
ଧନୁଶର ଧରି ବନେ ହରଷେ-
ବୁଲି କରନ୍ତେ ଶିକାର-
ଶାର୍ଦ୍ଦୂଳର ବଳ ରଦ୍ଦ କରି ଧରି ଗଣନ୍ତେ ରଦ ତାହାର।୭୦।

ଯେଉଁ ଆଶା ଜାଗେ ମାତା ମନରେ-
ଗର୍ଭସ୍ଥ ଶିଶୁଟା ବିଚାର କରେ;
କହନ୍ତି ତେଣୁ ଶର୍ମିଷ୍ଠା ଏକାନ୍ତେ-
ଗର୍ଭସ୍ଥ ଶିଶୁକୁ ସାନ୍ତ୍ୱନା ଏତେ
ଜନ୍ମ ହୋଇ ହେଲେ ବଡ଼-
ଶାର୍ଦ୍ଦୂଳର ସାଥେ ଲଢି ମୃତ ବତ କରି ଦେବ ତାକୁ ଜଡ଼।୭୧।

ନୋହୁତୁ ସାମାନ୍ୟ ଲୋକର ସୁତ
ପିତା ତୋର ଦିଗ୍ ବିଜୟୀ ସମ୍ରାଟ
ପିତାମହ ତୋର ସ୍ୱର୍ଗ ବିଜୟୀ
ମାତାମହ ତୋର ତ୍ରିପୁର ଜୟୀ
ମାଆ ତୋର ଆଜି ଦାସୀ-
କର୍ମ ଅବଳରୁ ହୋଇଛି ବନ୍ଦିନୀ ପିନ୍ଧି ଗଳେ କାଳ ଫାଶି।୭୨।

ଏହିପରି ଗଲା ତିନିଶ ଦିନ
ଭୂମିଷ୍ଠ ହେଲେ ଶର୍ମିଷ୍ଠା ନନ୍ଦନ
ରୂପ ଲାବଣ୍ୟରେ ଉପମା ନାହିଁ
ଯିଏ ଦେଖେ ଥରେ ରହେ ସେ ଚାହିଁ
ବାର୍ତ୍ତାପାଇ ମହାରାଜ-
ମନର ଉଲ୍ଲାସ ମନରେ ରଖିଲେ ଲୋକ-ସମାଜକୁ ଲାଜ।୭୩।

ଦାସୀ ପୁତ୍ର ପାଇଁ କି ଆୟୋଜନ !
ଆକର୍ଷିତ ହେବ ଲୋକ ଲୋଚନ !
ବାହାରେ କିଏ ଜାଣି ଲେ କି ନାହିଁ
ନାମ କରଣ ଦିନ ଗଲା ହୋଇ
ପୁତ୍ର ନାମ ଦେଲେ ପୁରୁ
ପୁରୁରବାଙ୍କର ଅଣନାତି ତୁ-ସେ ଆଶିଷ ଦିଅନ୍ତୁ ଦୂରୁ।୭୪।



ଯୁବରାଜ ଯଦୁ ରାଜ ଭବନେ
ମାଆ ପାଶେ ପୁରୁ ଅଶୋକ ବନେ
ଶୁକ୍ଳ ପକ୍ଷେ ଶଶି ବଢିଲା ପରି
ବଢନ୍ତି ସକଳ ମନ ବିହରି
ବର୍ଷ ହେଲା ଏକ ଶେଷ
'ମା-ମା-ପା-ପା' କହି ଚାଲିବାର ଇଚ୍ଛା କ୍ରମଶଃ ହେଲା ପ୍ରକାଶ।୭୫।

ଯଦୁଠାରୁ ପୁରୁ ହେଲେ ହେଁ ସାନ
ଜଣାଯାଉ ଥାଏ ବେଶି ନିପୁଣ
ସାହସ-ଶୌର୍ଯ୍ୟ-ସାଧନାରେ ତାର
ଚମତ୍କୃତ ହୋଇ ଦାସୀ ନିକର
କହୁଥାନ୍ତି ରାଣୀ ଆଗେ
ଶର୍ମିଷ୍ଠାର ପୁଅ ପୁରୁ ଖେଳୁଆଡ଼ ହୋଇଛି ବଡ଼ ସରାଗେ।୭୬।

କୌତୂହଳର ବଶବର୍ତ୍ତୀ ହୋଇ
ରାଣୀ ପଠାଇଲେ ଦିନେ ଡ଼କାଇ
ଶର୍ମିଷ୍ଠା ! ପୁଅକୁ ଧରି ଆସିବୁ,
ଆମକୁ ତୋ ପୁଅ ଦେଖାଇ ନେବୁ
ରାଜାଙ୍କର ଇଚ୍ଛା ଏହି-
ଉପହାର କିଛି ସ୍ନେହରେ ସେ ତୋର ପୁତ୍ରକୁ ପାରନ୍ତି ଦେଇ।୭୭।

ପିତାଙ୍କୁ ଦର୍ଶନ କରିବ ପୁଅ
ବାଘୁଣୀ-ରାଣୀକୁ ଏଣେ ଯେ ଭୟ
ବାର୍ତ୍ତା ପାଇ ହେଲେ ଶର୍ମିଷ୍ଠା ସଜ
କୋଳେ ଝଟକୁଛି ପୁରୁର ତେଜ
ଦ୍ୱିତୀୟ ଯଯାତି ସମ-
ତୁଳସୀ ଦ୍ୱିପତ୍ରୁ ବାସିଲା ପରାୟେ ରୂପ ଗୁଣେ ଅନୁପମ।୭୮।

ରାଜ ଭବନେ ଉପଗତ ହୋଇ
ଯଯାତିଙ୍କୁ ଆଗ ଭେଟିଲେ ଯାଇ
ଚିତ୍ରପଟ ଦେଖି ଥିଲା ତ ପୁରୁ
ଚିହ୍ନିଲେ ରାଜାଙ୍କୁ ଦେଖି ସେ ଦୂରୁ
ମା-ମା-ପା-ପା ବୋଲି କହି
ଶର୍ମିଷ୍ଠାଙ୍କ ମୁହଁ ବୁଲାଇ ରାଜାଙ୍କ ଆଡ଼କୁ ଦେଲେ ଦେଖାଇ।୭୯।





ବହୁ ଦିନ ପରେ ଚାରି ନୟନ
ମଧ୍ୟରେ ଘଟିଲା ମଧୁମିଳନ
ଯଯାତି ପୁରୁକୁ କୋଳରେ ଧରି
ଚୁମା ଦେଲେ ଗଣ୍ଡେ ଆଦର କରି
ପୁରୁ ଧରି ଦେଇ ନାକ-
ପା-ପା-ପା-ପା କହି ଚିମୁଟି ପକାଏ ମହାରାଜାଙ୍କର ବେକ ।୮୦।

ଶର୍ମିଷ୍ଠା ! ଏ ଠିକ୍ ମୋହରି ପରି
ଯଦୁ ହେବ ନାହିଁ ଏହାକୁ ସରି
ଚାରି ଆଖିରେ ଜଗି ରଖିଥିବ
ବଡ଼ ହେଲେ ଏ ମୋ ନାଁ ରଖିବ-
ଏଥିରେ ନାହିଁ ସନ୍ଦେହ-
ଅନ୍ତରରେ ମୋର ରହିଛି ରହିବ ତା ପ୍ରତି ଅପାର ସ୍ନେହ ।୮୧।

ରାଜାଙ୍କ ପାଖରୁ ବିଦାୟ ନେଇ
ରାଣୀ ହଂସ ପୁରେ ମିଳିଲେ ଯାଇ
ଦେବଯାନୀ ଦେଖି ଶର୍ମିଷ୍ଠା ପୁଅ
ମନେ ମନେ ହୋଇଗଲେ ବିସ୍ମୟ
ସତେ କେତେ କମନୀୟ-
ବଳିଲା ବଳିଲା ବାହୁ ଯୁଗଳତା ତେଜ ଭରା ବୀର ମୁହଁ ।୮୨।

ଯଦୁ-ପୁରୁକୁ ଏକ ବେଶ କରି
ବସାଇଲେ ଦାସୀ ରହିଲେ ଘେରି
ସାମୁଦ୍ରିକ ଜୌତିଷ ଡ଼କାଇଲେ
ଉଭୟଙ୍କ କର ଦେଖ ବୋଇଲେ
ସାମୁଦ୍ରିକ ହୋଇ ତୋଷ-
ଯଦୁ କର ଦେଖି କହିଲେ ଏହାର ନାହିଁ ବିଶେଷ ପୌରୁଷ ।୮୩।

ପୁରୁକର ଦେଖି ଜୌତିଷ ରାଜ
କହନ୍ତି ଧନ୍ୟ ମୁଁ ହୋଇଛି ଆଜ
ଏପରି କର କେବେ ଦେଖି ନାହିଁ
ଚକ୍ରବର୍ତ୍ତୀ ଚିହ୍ନ କରେ ରାଜଇ -ଏ-
ହେବ ଦିନେ ମହାରାଜ-
ବହୁ ଅସାଧ୍ୟ ସାଧନ ଏହା ପକ୍ଷେ ହେବ ନିତାନ୍ତ ସହଜ ।୮୪।





ଦେବଯାନୀ ହସି ଭାଷନ୍ତି ଧୀରେ -
କି କଥା କୁହ ବାଚାଳ ପ୍ରକାରେ !
ଦାସୀ ପୁତ୍ର ଏକି ରାଜା ହୋଇବ
ମୋ ପୁଅ କି ତେବେ ଘାସ କାଟିବ ?
ଶୁଣି ହସିଲେ କୌତିଷ
ମହାରାଣୀ ! ମୋର ନିଜ ବିଦ୍ୟାପରେ ଅଛି ଅତୁଟ ବିଶ୍ୱାସ ।୮୫।

ଦାସୀ ପୁତ୍ର ବା ଦୀନ ପୁତ୍ର ହେଉ
ନଦୀ-ସମୁଦ୍ର ଭାସି ଆସିଥାଉ,
ହସ୍ତ ରେଖା ୟାର ଅତି ଉଜ୍ଜଳ
ଏପରି କର ମହୀରେ ବିରଳ
ସତ୍ୟ-ସତ୍ୟ ଏ ଅଟଇ
ଯଥା କାଳେ ନିଶ୍ଚେ ଜାଣିବେ ଦଇବ ଅବଶ୍ୟ ଦେବ ଘଟାଇ ।୮୬।

ବିଦାୟ ନେଲେ ଗଣକ ପ୍ରବର
ମହାରାଣୀ ମନରେ ଗରଗର
ପଚାରନ୍ତି ଶର୍ମିଷ୍ଠା ମୁଖ ଚାହିଁ
କାହାକୁ ସେବି ତୁ ଏହାକୁ ପାଇ
ରାଜମାତା ବୋଲାଇବୁ-
ଦାସୀ ହୋଇ ମୋର ମୋ ଉପରେ ଦିନେ ପ୍ରତିଶୋଧ ତୁତ ନେବୁ।୮୭।

ସତ୍ ସତ୍ ମୋତେ କହିବୁ ଆସି
ଦେଉଛି ସମୟ ବିଚାର ବସି
ନୋହିଲେ କଠୋର ଦଣ୍ଡ ମୁଁ ଦେବି-
ରାଜମାତା ହେବା ଛଡ଼ାଇ ଦେବି -
ରଢ଼ି ଶୁଭେ ଘଡ଼ ଘଡ଼ି -
ଶର୍ମିଷ୍ଠାଙ୍କ ମୁଣ୍ଡ ଘୁରିଗଲା ସତେ ଭୂତଳେ ଯିବେକି ପଡ଼ି ।୮୮।

ଥରିଲା ଥରିଲା ପାଦ ପକାଇ
ଅଶୋକ ବନରେ ମିଳିଲେ ଯାଇ
ସତେକି ହରିଣୀ ଆସିଛି ଧାଇଁ
ବାଘୁଣୀ ଠାରୁ ଜୀବନ ବଞ୍ଚାଇ
ଦୁର୍ଗତିର କାହିଁ ଶେଷ !
ଅୟମାରମ୍ଭ ହୋଇଅଛି ମାତ୍ର ଯଜ୍ଞର ଏ ଅଧିବାସ ।୮୯।



ବିଷାଦେ ଶର୍ମିଷ୍ଠା ଭାବନ୍ତି ବସି
ଦେବେ ରାଜାଙ୍କର ନାମ ପ୍ରକାଶି
ତେଣିକି ଯାପଛେ ହେଲେ ହୋଇବ
କେତେ ମଣିଷ ଯ୍ୟ ଗାଳି ସହିବ !
ରାଜାଙ୍କୁ ତ ଦେବ ଗିଳି ।
ମହାତପା ଶୁକ୍ରାଚାର୍ଯ୍ୟଙ୍କର କୋପେ ରାଜା ଯିବେ ନିଶ୍ଚେ ଜଳି ।୯୦।

ସ୍ୱାମୀଙ୍କ ନୟନୁ ଝରିବ ଲୁହ
ଶୁଖି ଯିବ ତାଙ୍କ ଚନ୍ଦ୍ରମା ମୁହଁ
କି ସୁଖ ପାଇବି ତାଙ୍କୁ କନ୍ଦାଇ
ନିଜେ ପଛେ ମଲେ ମରିବି ମୁହିଁ
ହଳାହଳ ସବୁ ପିଇ
ଚରମ ତ୍ୟାଗର ଯୂପ କାଷ୍ଠ ମୂଳେ ବସିବି ମୁଁ ତାଙ୍କ ପାଇଁ।୯୧।

ଦେବଯାନୀ ବାଧା ହୃଦରେ ସହି
ନ ପାରନ୍ତି ମୁହଁ ଖୋଲି ସେ କହି,
ମୋ ପାଇଁ ଲୋକାପବାଦ ପାଇଲେ-
ଧୈର୍ଯ୍ୟ ବନ୍ଧ ତାଙ୍କ ତୁଟିବ ଭଲେ
ପତିବ୍ରତା ପଣ ମୋର
ହେବ ଛାରଖାର ଧର୍ମ ଦରବାରେ ଶାସ୍ତି ମିଳିବ ଅପାର ।୯୨।

ଏ କାଳେ ରସାରେ ବରଷା କାଳ
ନଦୀ ନାଳ ଲଙ୍ଘିଂ ଚାଲେ ଦ୍ୱିକୂଳ;
ବିଜୁଳୀ ଚମକେ ହୃଦୟ ଥରେ,
ଘଡ଼ ଘଡ଼ି ଘୋଟେ ଅବନୀ ପୁରେ -
ଚତୁର୍ଦ୍ଦିଗ ଅନ୍ଧକାର
ରାଜ୍ୟଛାଡ଼ି ଚାଲିଯିବା ପାଇଁ ଦୂରେ ସାହସ ପାଉନି ତାର।୯୩।

ଏଣେ ଦେବଯାନୀ- ତେଣେ ପ୍ରକୃତି
ଧରିଛି ତା' ପାଇଁ ଭୀଷଣ ମୂର୍ତ୍ତି
ସହଜେ ଅବଳା କୋଳେ ବାଳକ;
ବାପ ଘରେ ନାହିଁ ତା' ପାଇଁ ଫଙ୍କ -
ସ୍ୱାମୀ ଥାଇ ନିରୁପାୟ
ଆହା-କିବିକଳ ହେଉ ନ ଥିବ ସେ ଅବଳା-ବାଳା ହୃଦୟ ।୯୪।





ଇକ୍ଷୁ-ଦଣ୍ଡ ଘଣା ଚାପ ପାଇଲେ
ଅଖଣ୍ଡ ରସ-ଧାର ତହୁଁ ଝରେ,
ଫୁଲ ଫୋଡ଼ା ହେଲେ ଛୁଞ୍ଚି ସୂତାରେ
ମାଳ ରୂପେ ତାହା ପଡ଼ଇ ଗଳେ,
ତପ୍ତକାଞ୍ଚନ ପ୍ରହାର
ସହିଲେ ସିନା ଲଳନା ବକ୍ଷପରେ ଶୋଭେ ହୋଇ ଅଳଙ୍କାର ।୯୫।

ବିଧିର ବିଧାନ କେତେ କଠୋର
ବିପଦ ତାଙ୍କ କଷଟି ପଥର
ଘଷି ଘଷି କରେ ପରୀକ୍ଷା ସେହି-
ଉତ୍ତୀର୍ଣ୍ଣ ହେଲେ କୀର୍ତ୍ତି ବିରାଜଇ
ଯଶ ରଖେ କାଳ କାଳ
କର ଯୋଡ଼ି କହେ ଶର୍ମିଷ୍ଠା ଏକାଳେ ଦିଅ ବଳ ମହାବଳ ।୯୬।

ବର୍ଷାକାଳ ବାଧା ଏଡ଼ିବା ପାଇଁ
ନଗର ଉତ୍ସବେ ମନ ବଳାଇ
ମହାରାଣୀ-କରନ୍ତି ଆୟୋଜନ
କରିବାକୁ କିଛି ମନୋରଞ୍ଜନ
ନୃତ୍ୟ-ଗୀତ-ସମାରୋହ
ନାଟ ଅଭିନୟ-ଲୋକନୃତ୍ୟ ଆଦି ଚାଲିବ ଧରି ସପ୍ତାହ ।୯୭।

ଯେଉଁ ନୃତ୍ୟେ ଗୌରୀ ଶିବଙ୍କ ତପ
ଭାଙ୍ଗି କରିଥିଲେ ପ୍ରୀତି ଆଳାପ
ତା'ପରେ ବସନ୍ତ ବରଷା ନାଚ
ଦେଖାଇବାକୁ ମନେ ବହି ସ୍ୱଚ୍ଛ
ଜଣାଇଲେ ମହାରାଣୀ
ସାରା ନଗର ଯେ ଆନନ୍ଦ ମୁଖର ରାଣୀଙ୍କ ପ୍ରସ୍ତାବ ଶୁଣି ।୯୮।

ଉତ୍ସବ ଦିନ ଆସିଲା ପାଖେଇ
ଆନନ୍ଦର ପୂର୍ଣ୍ଣ କୁମ୍ଭ କାଖେଇ
ରଙ୍ଗଶାଳା କୋଳାହଳ ମୁଖର
ଅଭିନୟ ସ୍ରୋତ ହୋଇ ପ୍ରଖର
ଦର୍ଶକ ମାନସ ଭୂଇଁ
ଧୋଇ ଦେଉଥିଲା ଆବିଳତା ଯେତେ ପରି ତୃପ୍ତି ଭରି ଦେଇ ।୯୯।



ନଗରସାରା ପଡ଼ିଛି ଚହଳ
ମହାରାଣୀ ଆଜି ପିନ୍ଧି ବକ୍କଳ
ଗୌରୀ ନୃତ୍ୟ ପରିବେଷଣ କରି
ବସନ୍ତ-ବରଷା ନୃତ୍ୟ ବିସ୍ତାରି
ହରିବେ ସବୁରି ମନ
ସାରା ନଗରଟା ଖାଲି ପଡ଼ିଅଛି ରଙ୍ଗଶାଳା ଜନାକୀର୍ଣ୍ଣ ।୧୦୦।

ଶର୍ମିଷ୍ଠା ପାଖକୁ ଯାଇଛି ଦାସୀ
ଡ଼ାକି ଆଣିବାକୁ ଚାରୁ ସୁକେଶୀ
ସଜାଇ ଦେବ ଦେବଯାନୀ ବେଶ
ଚିତ୍ର ଶିଳ୍ପରେ ତା ବହୁ ପ୍ରବେଶ
ଜାଣିଛନ୍ତି ମହାରାଣୀ-
ଆଦେଶକୁ ପାଇ ଦାସୀ ଅଛି ଯାଇ ଶର୍ମିଷ୍ଠାକୁ ଡ଼ାକି ଆଣି ।୧୦୧।

ଆସିଲେ ଶର୍ମିଷ୍ଠା ମିଳିଲେ ପାଶେ
ରାଣୀ ହଂସପୁରେ ବେଶ ମାନସେ
କୋଳେ ଅଛି ପୁରୁ ପୁତ୍ରର ତନ
ଦେବଯାନୀ ହୋଇ ପ୍ରସନ୍ନ ମନ
ନିଭୃତ କକ୍ଷକୁ ନେଇ
ବୋଇଲେ ଶର୍ମିଷ୍ଠା ବେଶ କରିବାକୁ ତୋତେ ଆଜି ଡ଼ାକି ନାହିଁ ।୧୦୨।

କେଉଁ ସାଧୁ ତୋତେ ଦେଲେ ଆଶିଷ ?
ତାଙ୍କ ନାମ ଏବେ କର ପ୍ରକାଶ
ଶୁଣି ଶର୍ମିଷ୍ଠା ମୁଣ୍ଡ ଝାଇଁ ଝାଇଁ
ବଚନ ମୁଖରୁ ଷ୍ଫୁରଇ ନାହିଁ
ପାଷାଣ ପ୍ରତିମା ପରି
ନିର୍ବାକ ନିଷ୍ଚଳେ ଅପଲକ ନେତ୍ରେ ରହିଲେ ଚାହିଁ ସୁନ୍ଦରୀ ।୧୦୩।

ଜାଣେ ମୁଁ ଉତ୍ତର ଦେବୁନି ତୁହି
ଆଜି ରାତି ଥାଅ ଏଠାରେ ରହି
ନୃତ୍ୟ ଶେଷେ କାଲି ପ୍ରଭାତେ ଆସି
ତୋ ଗଳେ ପିନ୍ଧାଇ ଦେବି ମୁଁ ଫାଶି-ତୋ
ଜୀବନ-ଦୀପ ଲିଭାଇ
ତୋ ଜୀବନ ପଥେ ତୋ ପୁତ୍ରର ମଧ୍ୟ ଜୀବନ ଦେବି ବଧାଇ ।୧୦୪।





ସାଧୁଙ୍କ ଆଶିଷ ଯେବେ ତୋ ପରେ
ଉଦ୍ଧରିବେ ତୋତେ ଆସି ନିଶିରେ
ନୋହିଲେ ପ୍ରଭାତେ ଶବ ତୋହର
ଆଲିଙ୍ଗନ ନିଶ୍ଚେ ଯମୁନା ନିର
ମନେରଖିଥିବୁ ଏହା
ଏ ଗୁପ୍ତ କକ୍ଷରୁ ଉଦ୍ଧାରିବା ପାଇଁ ନାହିଁ କେହି ଆଉ ସାହା ।୧୦୫।

ଏତେ କହି ଦେଲେ କବାଟ କିଳି;
ଗୁପତ ପଥେ ଆସିଲେ ନିକିଳି
ବିଶ୍ୱସ୍ତା ବୁଢୀ ଦାସୀକୁ ଜଗାଇ
କହିଲେ ଉଜାଗରେ ଥିବୁ ରହି
ଯେପରି କେହି ନ ଜାଣେ
ପୁରଷ୍କାର ଦେବି ଅନେକ, ଲଙ୍ଘିଲେ ନ ରହିବୁ ଆଉ ପ୍ରାଣେ ।୧୦୬।

ଦେବଯାନୀ ଅଟେ ଅତି ନିପୁଣା;
ସଙ୍ଗୀତ ଶାସ୍ତ୍ରରେ ଅପସରୀ ଜିଣା
ରଙ୍ଗ ମଞ୍ଚେ ସାଜି ପାର୍ବତୀ ବେଶ
କରୁଛନ୍ତି ହାସ୍ୟ-ଲାସ୍ୟ ପ୍ରକାଶ
ଶଙ୍କର ତପଃ ଭଞ୍ଜନେ
ଦର୍ଶକ ମଣ୍ଡଳୀ ଚାହିଁ ରହିଛନ୍ତି ଦଳି ଦଳି ନେତ୍ରା ଞ୍ଜନେ ।୧୦୭।

ଯଯାତିଙ୍କ ମନେ ହରଷ ନାହିଁ
ଅଶୁଭ ସୂଚନା ହୃଦେ ଜାଗଇ
ଜଗାଇଥାନ୍ତି ରାଜା ନିଜ ଲୋକ
ଶର୍ମିଷ୍ଠା ପରେ ପଡ଼ିଲେ ଚଡ଼କ
ସହସା ଦେବେ ଜଣାଇ
ଏ କାଳେ ରାଜାଙ୍କ ଲୋକ ଜଣାଇଲା ଶର୍ମିଷ୍ଠା ତ ଦିଶୁ ନାହିଁ।୧୦୮।

ଆନନ୍ଦ ଭବନେ ପାଇଲି ନାହିଁ
ରାଜ ଉଆସରେ ନ ଦେଖି କାହିଁ;
ଏହି ନାଟଶାଳା ଖୋଜି ଥକିଲି
ଶର୍ମିଷ୍ଠାଙ୍କୁ କେଉଁଠି ନ ଦେଖିଲି
ଶୁଣିଲି ଡ଼କାଇ ରାଣୀ
ଆଣିଛନ୍ତି ବେଶ ହେବାପାଇଁ ଭାଷ-ପ୍ରକାଶେ ଦାସୀ ଏ ପୁଣି ।୧୦୯।



ଦେବଯାନୀ ନୃତ୍ୟେ ରହିଛି ବୁଡ଼ି
ଶୃଙ୍ଗାର ମୁଦ୍ରାମାନ ପଡ଼େ ଝଡ଼ି
ଏଣେ ରାଜାଙ୍କର ଫଙ୍କାଶୀ ଉଡ଼ି
ଗଲା ଧାଇଁ ଛନ୍ତି ସେ ଉଠି ପଡ଼ି
ରହସ୍ୟ ଭେଜିବା ପାଇଁ
ରଥଧରି ସଜ ହୋଇଥାଅ ନିଜ ଲୋକକୁ ଆଦେଶ ଦେଇ।୧୧୦।

ରାଣୀହଂସପୁରେ ମିଳିଲେ ଆସି;
ଉକାଗରେ ବସିଛି ବୁଢୀ ଦାସୀ;
କୋମଳ ସ୍ୱରେ ରାଜା ପଚାରିଲେ
ଶର୍ମିଷ୍ଠା ଅଛି କି ନାହିଁ ଏଠାରେ ?
ଶୁଣି ଦାସୀ କାଶି କାଶି
ଭାଷିଲା ରାଜନ - "କାହୁଁ ମୁଁ ଜାଣିବି ହୋଇ ଏକ ଛାର ଦାସୀ।୧୧୧।

ହାବ ଭାବ ଇଙ୍ଗିତରୁ ତାହାର
ଗୁପ୍ତ ତଥ୍ୟ ହୋଇ ପାରେ ବାହାର
ଭାବି ଦେଲେ ରାଜା ସୁବର୍ଣ୍ଣ ମାଳି
ଉପହାର ତୋର ନିଅରେ ଆଳି
ନିର୍ଭୟେ ଜାଣିଛୁ କର ପ୍ରକାଶ
ଡ଼ରି ଡ଼ରି ଦାସୀ ଗୁପ୍ତ କକ୍ଷ ଆଡ଼େ କଲା ଆଙ୍ଗୁଳି ନିର୍ଦ୍ଦେଶ।୧୧୨।

ଖରତରେ ନୃପତି ଗଲେ ଧାଇଁ
ରାଣୀହଂସପୁର ସୁଡ଼ଙ୍ଗ ଦେଇ
ନିଭୃତ କକ୍ଷରେ ହେଲେ ପ୍ରବେଶ
ଦେଖିଲେ ଶର୍ମିଷ୍ଠା ପୂରୁର ବେଶ
ଅବସନ୍ନ ଅସହାୟ
ଶର୍ମିଷ୍ଠାର ଘୋର ଅମାନିଶି ନାଶେ ହେଲେ କି ରବି ଉଦୟ।୧୧୩।

ନ କର ବିଳମ୍ବରେ ଜୀବଧନ !
ଅଶୋକ ବନେ ରଖିଛି ସ୍ୟନ୍ଦନ,
ରଥେ ବସି ଯାଅ ଦୂରକୁ ଚାଲି
ଯାହା ହେବ ପରେ ବୁଝିବି କାଲି
ତରତର ହୋଇ ଆସି
ପୁତ୍ର କୋଳେ ଧରି ଶର୍ମିଷ୍ଠା ରଥରେ ଖରତରେ ଗଲେ ବସି ।୧୧୪।





ବର୍ଷୁଛି ଜଳ ମୂଷଳଧାରାରେ,
ଶୀତଳ ପବନେ କଲିଜା ଥରେ
ବିଜୁଳି କଡାଇ ନେଉଛି ପଥ
ଅନ୍ଧକାର ଚିରି ଚାଲିଛି ରଥ ।
ଜଗତ ଜୀବନ ହରି ହେ
ଅଶାନ୍ତ ବଳୟୁ ମୁକତି କରନ୍ତୁ ଏତିକି ମାତ୍ର ଗୁହାରି ।୧୧୫।

ରତ୍ନମାଳା ଏକ ନୃପତି ଧରି
ତୃପତି କିଛି ଅନ୍ତରରେ ଭରି
ରଙ୍ଗଶାଳାଠାରେ ମିଳିଲେ ଆସି
ନୃତ୍ୟରତା ଦେବଯାନୀ ସୁକେଶୀ
ନୃତ୍ୟକଲେ ସମାପନ
ନୃତ୍ୟ-ଗୀତ-ତାଳ-ବାଦ୍ୟ ଶବଦରେ ଶଙ୍କର ଭାଙ୍ଗିଲେ ଧ୍ୟାନ।୧୧୬।

କରତାଳି-ଜୟ ଧ୍ୱନିରେ ପୁର
ସହସା ହୋଇ ଉଠିଲା ମୂଖର
ରତ୍ନମାଳାକୁ ଧରି ଉପହାର,
ରଙ୍ଗମଞ୍ଚେ ରାଜା ବିଜେ ସତ୍ୱର
ଦେବଯାନୀ ଗଳେ ଦେଇ
ଭାଷିଲେ କୋମଳେ କୋମଳାଙ୍ଗୀ ଆଜ ତବ ନୃତ୍ୟେ ମୁଗ୍ଧ ମୁହିଁ ।୧୧୭।

ଫେରିଲେ ଭବନେ ହୋଇ ହରଷ
ଆଲୋଚନା କରି କାବ୍ୟର ରସ
ନିଶି ହୋଇଥିଲା ଯେଣୁ ଅଧିକ
ପଲଙ୍କେ ପହୁଡ଼ି ଲଭିଲେ ସୁଖ
ସ୍ୱପନ ସରିତେ ଭାସି
ପରସ୍ପର ବିପରୀତ ଦିଗେ ଗତି କରି ହେଉଥାନ୍ତି ଖୁସୀ ।୧୧୮।

କାକ-ପୀକ-କୁକୁଟ-କୁମ୍ଭାଟୁଆ
ଗୀତ ଗାଇ ଗାଇ ଘର ଚଟିଆ
ଉଷା ଯୋଷାର ସ୍ୱାଗତ ରଚିଲେ;
ଜଗତ ଜନ କଲ୍ୟାଣ ପାଞ୍ଚିଲେ
ଅରୁଣ କିରଣ ଜାଳ
ନବ ଚେତନାର ନବ ପ୍ରେରଣାର ଆଭାସିଲେ ଅନୁକୂଳ।୧୧୯।

❊ ❊ ❊





# ପଞ୍ଚମସର୍ଗ

## ଆଷାଢ ଶୁକ୍ଳବାଣୀ

ଦେବଯାନୀ ମନେ ମନେ ଗରଜି
ପଲଙ୍କ ତେଜିଲେ ନିଦ୍ରା ବରଜି;
ପ୍ରତିଶୋଧ ବହ୍ନି ଉଠିଲା ଜଳି,
ପୂର୍ବରାତ୍ରିରୁତ ଥିଲା କୁହୁଳି,
ରାହୁ ରୂପେ ସାଜି
ଶର୍ମିଷ୍ଠା-ଶଶୀକୁ ଗ୍ରାସୀବେ ଆଜି ।୧।

ଛଳନାମୟୀ ସେ ଲଳନା ମଣି
ସଜାଇ ନିଜକୁ ସୁବେଶେ ପୁଣି
ବିଜେ ହୋଇ ମହାରାଜାଙ୍କ ପାଶେ
ଚାରୁ ହାସିନୀ ବିମ୍ବାଧରୀ ଭାଷେ
ହୋଇଛି ମୁଁ ଧନ୍ୟା
ପାଇ ରତ୍ନମାଳା ପ୍ରୀତିର ବନ୍ୟା ।୨।

ଯଥାକାଳେ ଯାହା ଦେଲେ ବଧାଇ
ଅବଶ୍ୟ ତାହାର ଉପମା ନାହିଁ;
କୁବେର ସମାନ ସମ୍ପଦ ପାଇ
ରତ୍ନମାଳାରେ ମୁଗ୍ଧାନୁହେଁ ମୁହିଁ,
ଅନ୍ୟକିଛି ଦେଇ
ଧନ୍ୟ ହେବେ କି ଆଜି ନରସାଇଁ ।୩।

କେଉଁ ଦ୍ରବ୍ୟରେ ବଳିଛି ମାନସ ?
ନୁହେଁ ଅଦେୟତା କର ପ୍ରକାଶ;
କହିବାକୁ ହେବକି ମୁହିଁ-ଖୋଲି;
ନ କହିଲେ ତା ଜଣିବି କିପରି !
ତହୁଁ ମହାରାଣୀ
ନୟନ-ଧନୁରେ କଟାକ୍ଷ-ହାଣି ।୪।



କଣାଇଲେ ଧରି ନୃପଙ୍କ କର
ଦେଖନ୍ତୁ ଉଦ୍ୟାନ ପୁଷ୍ପ ନିକର
ସ୍ୱହସ୍ତରେ ମନ ଇଚ୍ଛାରେ ତୋଳି
ଆଣି ମୋ ପାଖରେ ଦିଅନ୍ତୁ ଢାଳି
କରିବି ଗଜରା
କୁସୁମର ହାର ଗୁନ୍ଥିବି ତୋରା ।୫।

ମୋ ଗଭାରେ ସାଜି ଦେବେ ଆପଣ;
ଆପଣଙ୍କ ଗଳେ ମୁଁ ମାଲ୍ୟାର୍ପଣ
କରିବି ଏହା ବଳିଛି ମାନସ
ଶୁଣି ଯଯାତି ହେଲେ ହସ ହସ
ବୁଝିଲେ ଚାତୁରୀ
ଦେବଯାନୀଙ୍କର ପ୍ରୀତି-କସ୍ତୁରୀ ।୬।

ଏଥିପାଇଁ କିଛି ନ ଭାବ ମନ
ଏବେ କରିବି ମୁଁ ପୁଷ୍ପ ଚୟନ
କହି ପଶିଲେ ଉଦ୍ୟାନ ଭିତରେ
ଦେବଯାନୀ ଗଲେ ଗୁପ୍ତ କକ୍ଷରେ
ଶିକାରତ ନାହିଁ
ବାଘୁଣୀ ପରାୟେ ଗର୍ଜିଲେ ତହିଁ ।୭।

ବୁଢୀ ଦାସୀକୁ ଚାବୁକ ପିଟିଲେ
ମନଇଚ୍ଛା ଯେତେ ଯାହା ବକିଲେ
ମିଳିଲା ତ ନାହିଁ କିଛି ସନ୍ଧାନ
କ୍ରୋଧରେ କମ୍ପୁଅଛି ଅପଘନ
ମୁହଁ କରି ଭାରି
ମନେ ମନେ ହେଲେ ବିଷ ଉଦ୍‌ଗାରୀ ।୮।

ମଧ୍ୟାହ୍ନେ ପୁଛିଲେ ରାଜାଙ୍କୁ ଯାଇ
ଶର୍ମିଷ୍ଠାକୁ ଦେଖିଛନ୍ତି କି ନାହିଁ ?
ଯଯାତି କହିଲେ - ଅଶୋକ ବନେ
ରହିଥିବ ସେ ଆନନ୍ଦ ଭବନେ
ସେଠାରେ ସେ ନାହିଁ
ଗତ ରାତ୍ରିରୁ ପଳାଇଛି କାହିଁ ।୯।





କାଲି ରାତ୍ରେ କାହିଁ ଗଲେ ଆପଣ ?
ନାଟ୍ୟ ଶାଳେ ଶୂନ୍ୟ କରି ଆସନ ?
ଆସିଥିଲି ପରା ପ୍ରାସାଦେ ମୁହିଁ
ତବ ନୃତ୍ୟରେ ଅତି ମୁଗ୍ଧ ହୋଇ
ନେଇ ରତ୍ନମାଳି
ବଧାଇ ଦେବାକୁ ପ୍ରାଣ-ଶଙ୍ଖାଳି । ୧୦ ।

ଚୋର ମାଆ ଲାଜେ କାନ୍ଦିଲା ପରି
ମହାରାଣୀ ମନେ ମନେ ଝୁମୁରି
ରହିଲେ ବାହାକୁ କାମୁଡ଼ି ହୋଇ
ନିଜ ଖୋଳା ଗାଡେ ଗୋଡ଼ ଖସାଇ
ପୁଣି ଭାବି ମନ
ଡ଼କାଇଲେ ସିପାହୀ କେତେ ଜଣ । ୧୧ ।

ଦେଲେ ଆଦେଶ ଗ୍ରାମେ ଗ୍ରାମେ ଯାଇ
ପ୍ରଜାଙ୍କୁ କୁହ ଢ଼େଙ୍ଗୁରା ବଜାଇ
ମହାରାଣୀଙ୍କର ଦାସୀ ପଳାଇ
ଯାଇଛି କୋଳେ ଶିଶୁପୁତ୍ର ନେଇ
ଧରାଇବ ଯିଏ
ବହୁ ପୁରସ୍କାର ପାଇବ ସିଏ । ୧୨ ।

ଏଣେ ଶର୍ମିଷ୍ଠାଙ୍କ ମନରେ ଭୟ,
ବର୍ଷା-ବାତ୍ୟା ତନୁ କରେ ଅଥୟ ।
କୋଳେ ଶିଶୁପୁତ୍ର ପଡ଼ିଛି ଶୋଇ
ବାଇଚଡେଇର କି ପାଏ ତହିଁ
ବୃକ୍ଷଯାଏ ହଲି
ଦେବଯାନୀ ପ୍ରଭଞ୍ଜନେ ଦୋହଲି । ୧୩ ।

ରାଜପୁରଠାରୁ ବହୁତ ଦୂରେ
ଉପସ୍ଥିତ ହୋଇ ଏକ ମନ୍ଦିରେ
ବିନୟେ ବାହକ କରକୁ ଯୋଡ଼ି
କହିଲା ଏଠାରେ ଯିବାକୁ ଛାଡ଼ି
ନୃପତି ଆଦେଶ;
କ୍ଷମା କରିବେ ମୁଁ ଦାସାନୁଦାସ । ୧୪ ।





ମରଣ ମୁଖରୁ ମୋତେ ଉଦ୍ଧାରି
ପ୍ରାଣ ପ୍ରିୟ୍ ଦେଲ କି ପର କରି
କରୁଣାଲବେ କରିଥାନ୍ତ ଯେବେ
ଚରଣାଶ୍ରିତା ହୋଇଥାନ୍ତି ତେବେ
କି ହୁଅନ୍ତା ହାନି ?
କି ହାନୀ କରିଥାନ୍ତା ଦେବଯାନୀ ।୧୫।

ପ୍ରାଣପ୍ରିୟ୍ ତବ ପ୍ରୀତି ନିର୍ଝର
ଲାଘବ କରିବ ମୋ ହୃଦଭାର
ଜୀବନ ସଂଗ୍ରାମେ ହେବାକୁ ଜୟୀ
ସଦିଚ୍ଛା ତୁମର ସଦା ମୋ ପାଇଁ;
ଏତିକି ମୋ ଅଳି
ସାହସ ଦିଅ ହୃଦେ ଗଲା ମାଳି।୧୬।

ରାଜପୁରେ ବଡି ଐଶ୍ବର୍ଯ୍ୟ କୋଳେ
ଦୁଃଖ କଷ୍ଟ ଜାଣି ନ ଥିଲି ତିଳେ;
ଦାସୀ ହୋଇ ତବ ପ୍ରାସାଦେ ରହି
ସ୍ୱର୍ଗୀୟ୍ ସୁଖ ମୁଁ ପାଇଛି ତହିଁ
ଏଣିକି କି ହେବ
ଅପନ୍ତରା ରେ କି ଜୀବନ ଯିବା।୧୭।

ଅନ୍ତରରେ ଭରା ଶୂନ୍ୟତା ମୋର
ବାହାରେ ଶୂନ୍ୟ ଏ ଜୀର୍ଣ୍ଣ ମନ୍ଦିର
ମନ୍ଦିରେ ଈଶ୍ୱର ମୂର୍ତ୍ତି ନୀରବ
ହୃଦେ ଯଥା ତୁମେ ହେ ଜୀବଧବ।
ବରଷାର ଧାର
ଲୋତକ ପ୍ରବାହ ହୋଇଛି ମୋର।୧୮।

ଘନ ଘନ ମାରେ ନଭେ ବିଜୁଳୀ
ତୁମ ସ୍ମୃତି ତଥା ପଡ଼େ ଉଛୁଳି
ଘୋର ଅନ୍ଧକାରେ ଦେଖାଏ ପଥ
ବକ୍ର-ଦେବଯାନୀ ବାଣ ଅବ୍ୟର୍ଥ
ପଡ଼ିଛି ମୁଁ ତଳେ
ପୁରୁକୁ ଧରି ଜୀବନ ବିକଳେ।୧୯।



ଆଉ କି ଦେଖିବି ମୁଖ ରାଜୀବ !
ବକ୍ଷରେ କି ଆଉ ଜାକି ଧରିବ !
ପଦ୍ମକୁ ମାଗିଲେ ଚନ୍ଦ୍ରକୁ ଦେବ
ନିଭୃତେ ନିରେଖି-ଦେଖି ହସିବ
ସେକଥା ସୁମରି
ଜୀବ ଧନ ଯିବି ଏଣିକି ମରି ।୨୦।

କୋଳେ ମୋର ଅଛି ଦୁଃଖୀ ଶଙ୍ଖାଳି !
ବିହିତା କପାଳେ ବୋଳିଛି କାଳି
ରାଜପୁତ୍ର ହୋଇ ଶୋଇଛି ତଳେ
ଜନଶୂନ୍ୟ ମନ୍ଦିର ମୁଖଶାଳେ
ଦାରୁଣ ଦଇବ
ଦୁଃଖ ଦେଇ କିରେ ସୁଖ ମିଳିବ ।୨୧।

ଏହିପରି ଅଶ୍ରୁଧାର ବୁହାଇ
ଶର୍ମିଷ୍ଠା ଦେଲେ ରଜନୀ ପୁହାଇ;
ପୂର୍ବଦିଗୁ ରବି ଉଠିଲେ ହସି
ଅରଣ୍ୟ ପ୍ରକୃତି ଉଠେ ଝଲସି
ପୁରୁ ତାହା ଦେଖି
ମନେ ମନେ ହୁଏ ଅନେକ ସୁଖୀ ।୨୨।

ପୀକ-ଶୁକ-ସାରୀ-ରାବନ୍ତି ଡ଼ାଳେ
ମୟୂର ନାଚି ନାଚି ପୁଛ ଚାଳେ
ହଳଦୀ ବସନ୍ତ କଜଳ ପାତି
ବଣି କୁମ୍ଭାଟୁଆ ମରାଳ-ପନ୍ତି
ନାଚତାଳେ ତାଳେ
ନୃତ୍ୟ ସଙ୍ଗୀତରେ ବନ ଉଛୁଳେ ।୨୩।

ପୁରୁ ମନ ଯାଏ ତହିଁରେ ଲାଖି
ବନବାସେ ସେ ତ ଅଧିକ ସୁଖୀ
ଜଞ୍ଜାଳ ତାହାର ଟିକିଏ ନାହିଁ;
ଶର୍ମିଷ୍ଠାଙ୍କ ମନେ ଶାନ୍ତ୍ୱନା ଏହି
ଚାଲି ସଂଭ୍ରମରେ
ଲକ୍ଷ୍ୟହୀନ ପଥ ଅତିକ୍ରମରେ ।୨୪।





ବର୍ଷାକାଳ ଆସି ହେଲାଣି ଶେଷ
ନଭେ ନିର୍ମଳ ଆଲୋକ ପ୍ରକାଶ
ସବୁଜ ସମ୍ଭାରେ ପ୍ରକୃତିରାଣୀ
ଚଉଦିଗରେ ନୀଳ-ପଣତ ଟାଣି
ଖୋଷିଛି କି ଫୁଲ
ଗଭାରେ, ଦିଶୁଛି ଅତି ମଞ୍ଜୁଳ ।୨୫।

ନଦୀ-ନିର୍ଝରର ନିର୍ମଳ ଜଳ
ମାଳଭୂମି ପଥେ ହୋଇ ବିକଳ
ଆସୁ ଆସୁ ପ୍ରତିବନ୍ଧକ ପାଇ
ପ୍ରପାତ ରୂପେ ପଡ଼ିଅଛି ଡେ଼ଇଁ
ଅତି ଚମତ୍କାର
ପ୍ରକୃତିର ସେହି ଶୋଭା ସମ୍ଭାର ।୨୬।

କାହିଁ କୃଷକ କ୍ଷେତ-କାମକରେ
ମୁଣ୍ଡଝାଳ ତାର ତୁଣ୍ଡରେ ମାରେ
ଜୀବନ ସଂଗ୍ରାମେ- ହାଟ ଲାଗିଛି
ଦେଖି ଦେଖି ଶର୍ମିଷ୍ଠା ଯେ ଚାଲିଛି
ଏକା ତାର ପୁରୁ
ଆଶା ଭରସାର କଳପତରୁ ।୨୭।

ବିଲ ବନ ଗିରି ପ୍ରାନ୍ତର ଡେ଼ଇଁ
ଚାଲିଛି ଶର୍ମିଷ୍ଠା ପଛେ ନ ଚାହିଁ
ସତେକି ସରିତ ଯାଉଛି ବହି
ବାଧା ବିପତ୍ତିକୁ ଖାତିର ନାହିଁ
ଆଶାବଳବର୍ତ୍ତୀ
ଜଗାଇଛି ହୃଦେ ଦୃଢ ଶକତି ।୨୮।

ନଭରଙ୍ଗ ମଞ୍ଚେ ରାଜୁତି ସାରି
ରବି-ଲଭି ଅସ୍ତ ଗିରି ଶିଖରୀ
ରଙ୍ଗ ପରଦା ଅନ୍ତରାଳେ ଲୁଚି
ଯିବାରୁ, ରଜନୀ ଫିଟାଇ କଞ୍ଚି
ଦେଇଛି କି ବୁଣି
ନଭେ ନକ୍ଷତ୍ର ମୋତି ନିଶା ମଣି ।୨୯।





କି ଅବା ଗଗନ-ଚନ୍ଦ୍ର ଚଷକ
ଧରି ପିଇ ସୁରା ଅନେକ ଢୋକ
ନିଶାରେ ତଳକୁ ଦେଇଛି ଢାଳି
ତେଣୁ ଚନ୍ଦ୍ରିକା ପଡ଼ିଛି ଉଚ୍ଛୁଳି
ଶୁଭ୍ରାଲୋକ ରାଜି
ଧରାବକ୍ଷରେ ଉଠେ ଗଳ ଗାଜି ।୩୦।

ଚାଲି ଚାଲି ଅନେକ ଦୂର ପଥ
ହେବାରୁ ରଜନୀ ରାଣୀ ଆଗତ
ବିଶ୍ରାମ ଆଶା ମାନସରେ ଧରି
ପାନ୍ଥଶାଳା ପାଶେ ଆସି ସୁନ୍ଦରୀ
ହାତ ପାଦ ଧୋଇ
ବସିଲେ ଦୀର୍ଘ-ନିଶ୍ୱାସ ପକାଇ ।୩୧।

ଏକାଳେ ସହସା ରାଜଘୋଷକ
ଢେଙ୍ଗୁରା ବଜାଇ ଦେବାରୁ ଲୋକ
ରୁଣ୍ଡ ହୋଇ ଗଲେ ତାହାକୁ ଘେରି
ଘୋଷଣା କଲା ସେ ଉଚ୍ଚେ ଉଚ୍ଚାରି
ଶୁଣ ସର୍ବେ ଶୁଣ
ସାବଧାନେ ଡ଼େରି କରି ଶ୍ରବଣ ।୩୨।

"ମହାରାଣୀ ଙ୍କର ଆପଣା ଦାସୀ
ବ୍ୟଭିଚାରିଣୀ ଦୋଷେ ହୋଇ ଦୋଷୀ
ସଙ୍ଗେ ତାର ଶିଶୁ ପୁତ୍ରକୁ ଧରି
ଆସିଛି ରାଜ ପ୍ରାସାଦୁ ବାହାରି
ଧରାଇବ ଯିଏ
ବହୁ ପୁରସ୍କାର ପାଇବ ସିଏ ।୩୩।

ଏପରି ଘୋଷଣା ସେଠାରେ ଶୁଣି
ଶର୍ମିଷ୍ଠା ପୁରୁକୁ କୋଳକୁ ଆଣି
ଭୀତ-କାତରା ହରିଣୀ ପ୍ରକାରେ
ଲୁଚି ଲୁଚି ଚାଲି ଗଲେ ସେ ଦୂରେ
ବନ ଅଭିମୁଖେ
ଯେଉଁ ପରି ଆଉ କେହି ନ ଦେଖେ ।୩୪।





ଅରଣ୍ୟ ମଧ୍ୟରେ ଅନତି ଦୂରେ
ମିଳି ଏକ ଭଗ୍ନ ଜୀର୍ଣ୍ଣ ମନ୍ଦିରେ
ରାତିଟି ସେଠାରେ କଟିବା ପାଇଁ
ମନ୍ଦିର ମଧ୍ୟରେ ପଶିଲେ ଯାଇ
ଦିଅଁଙ୍କୁ କୁହାରି
କଲେ ବିନୟେ ଅନେକ ଗୁହାରି ।୩୫।

ଶିବ ଶଙ୍କର ହେ ! ଭୋଳାମହେଶ
ସୃଷ୍ଟି ରକ୍ଷା ପାଇଁ ଗିଳିଲ ବିଷ
ଆଶୁତୋଷ ନାମ ବହିଛ ହର
ଦୁଃଖିନୀର ଦୁଃଖ ମୋଚନ କର
ଦେଖାଅ ହେ ପଥ !
ଅନ୍ଧକାରାଚ୍ଛନ୍ନ ଜୀବନ-ରଥ ।୩୬।

ସହି ସହି ପ୍ରଭୁ ଦୁଃଖର ଦାଉ
ସହିବାକୁ ବଳ ପାଉନି ଆଉ
ବନ ଫଳ ପୁଣି ଝରଣା ଜଳ
ଭକ୍ଷି କେତେ ଆଉ କାଟିବି କାଳ
ଦୁଃଖ ଅବସାନ !
ହେବ କେବେ- ମୋର ହେ ! ତ୍ରିଲୋଚନ ? ।୩୭।

ମୋ ଜୀବନ ପାଇଁ ନାହିଁ ମମତା
ବିସର୍ଜି ଦିଅନ୍ତି ଜଳାଇ ଚିତା
ମାତ୍ର ଏ କୋମଳ ଶିଶୁଟି ପାଇଁ
ବିପଦ-ବନ୍ଧୁର ପଥରେ ଧାଇଁ
ଦେବାକୁ ଆହୁତି-
ଜୀବନ-ଘୃତ, ଦୃଢ଼ କରେ ଛାତି ।୩୮।

ଜନନୀ ନୟନେ ଲୋତକ ଧାର
ଦେଖି ପୁରୁ କିସ ଭାବି ମନର
ପଣତରେ ପୋଛି ନୟନ ଦୁଇ
ଠାକୁରଙ୍କୁ କିସ କହିଲା ଚାହିଁ
ମାଆ ପାଖେ ବସି-
ଦେଉଥାଏ ଧୀରେ ଧୀରେ ଆଉଁଷି ।୩୯।





ଶଙ୍କରଙ୍କୁ ନିଜ ଦୁଃଖ ଶୁଣାଇ
ଶର୍ମିଷ୍ଠା ଦେଲେ ରଜନୀ ପୁହାଇ;
ଆସିଲା ଉଷାର - ଅମୃତ ବେଳ
ଲକ୍ଷ୍ୟ ହୀନ ପଥରେ ଅନୁକୂଳ
ଗହନ - ବନକୁ,
ପାଦେ ଛଡ଼ାଇ-ଗଲେ ଜୀବନକୁ।୪୦।

ଜନ ସମାଜରେ ନାହିଁ ଆଶ୍ରୟ
ଚାରି ଆଡେ ଦେବଯାନୀର ଭୟ
ଅରଣ୍ୟ -ପ୍ରକୃତି କେଡ଼େ ସୁନ୍ଦର
ଲଘୁକରେ ଦୁଃଖି ହୃଦୟ ଭାର
ଯୋଗୀ ଋଷି ପାଇଁ
ଅତି ମନୋରମ ଅରଣ୍ୟ ଭୂଇଁ।୪୧।

କେଉଁ ଋଷିଙ୍କର ଆଶ୍ରମେ ରହି,
ସେବା କରି ଦିନ ଦେବି କଟାଇ
ବଡ଼ ହେଲେ ମୋର ରଙ୍କ-ରତନ
ଅବଶ୍ୟ କରିବ କିଛି ଯତନ;
ହେଲେ ଭାଗ୍ୟୋଦୟ
କଟିବ ପୁଣି ସୁଖରେ ସମୟ।୪୨।

ଜୀବନ ହିଁ ଆଶା, ଆଶା ଜୀବନ
ଆଶା ପଛେ କରି - ଅନୁଧାବନ
ଆଗକୁ ଆଶାତ - ପଛକୁ ଆଶା
ପୁର-ପରି ଆଶା - ପିଠାରେ ବସା,
ଆଶା ହିଁ ଶାସ୍ୱତ,
ଆଶାରେ ସୂର୍ଯ୍ୟ - ଚନ୍ଦ୍ର ଆତ ଯାତ।୪୩।

ମରଣ-ମୁଖରୁ ଉଦ୍ଧାର ପାଇ
ବଞ୍ଚିବାର ଆଶା ହୃଦରେ ନେଇ
ଶର୍ମିଷ୍ଠା ଚାଲନ୍ତି ଆଗରୁ ଆଗେ-
ପୁରୁ ଦେଖେ ଚାହିଁ ବଡ଼ ସରାଗେ
ବେଳେ ବେଳେ ଚାଲି,
ହାତରେ ଧରେ ମୁଠା ମୁଠା ବାଲି।୪୪।





ଚାଲିଲେ ଚାଲେ ସିଂହ ଶିଶୁ ପରି-
ତ଼ାଳପତ୍ର ଖଣ୍ଡେ ହାତରେ ଧରି
ନଥାଏ ମନରେ ଡ଼ର କି ଭୟ
ଜଙ୍ଗଲ ରାଜା କି କରେ ବିଜୟ
ଶର୍ମିଷ୍ଠା ବିଲୋକି
ଏତେ ଦୁଃଖେ ପ୍ରେମେ ଯାଏ ପୁଲକି ।୪୫।

ଅସ୍ତଗାମୀ ରବି - ଲୋହିତ କର,
ପଡ଼ିଥାଏ ନୀଳ-ଗିରି-ଶିଖର,
କଳ-କଳ ନିର୍ଝରିଣୀ ବିତାନ
ବିହଙ୍ଗ -କାକଳୀ କୁହୁ ନିସ୍ୱନ
ମୋହୁଥାଏ ମନ,
ବନ- ଦେବୀର କି କେଳି -ସଦନ ।୪୬।

ସେ ସୌନ୍ଦର୍ଯ୍ୟ ନିଏ ହୃଦକୁ କିଣି
ସ୍ୱତଃ ପାଦ ହୁଏ ଆଗକୁ ଟାଣି
ପ୍ରକୃତି ଗଭାର- ଫୁଲ ପରାୟେ
ଅରଣ୍ୟ ସୁଷମା ମନକୁ ମୋହେ
ଡ଼ର ଭୟ ଛାଡ଼ି
ଶର୍ମିଷ୍ଠା ଯାଆନ୍ତେ ଆଗକୁ ମାଡ଼ି ।୪୭।

ପଛରୁ ଶୁଭିଲା ରହରେ ରହ,
ଜୀବନକୁ ତୋର ନାହିଁକି ଭୟ
ଖସି ଗଲେ ଗୋଡ଼ ପଡ଼ିବୁ ତଳେ
ଚମକି ଶର୍ମିଷ୍ଠା ଫେରି ଚାହିଁଲେ
କିଏ ଜଣେ ଋଷି
ଦେଖି ଶର୍ମିଷ୍ଠା ମନେ ହେଲେ ଖୁସୀ ।୪୮।

ପଛକୁ ଆସି ସେ ଦେଖିଲେ ଯାହା
ଆଖିକୁ ବିଶ୍ୱାସ ନହୁଏ ତାହା
ଯଯାତିଙ୍କ ବଡ଼ ଭାଇ ଏ ଯତି
ଭୟେ ଶର୍ମିଷ୍ଠାଙ୍କ ଥରିଲା ଛାତି
ସେ ରାତିର କଥା
ସୁମରି ଘୁରି ଯାଉଥାଏ ମଥା ।୪୯।





ଯତି ମହାରାଜ ଦେଇ ନିର୍ଭୟ
କହିଲେ ଶର୍ମିଷ୍ଠେ ! ନକର ଭୟ,
ମସ୍ତିଷ୍କ ବିକୃତି ଆଉ ତ ନାହିଁ
କଚଙ୍କ ଚେଷ୍ଟାରେ ଆରୋଗ୍ୟ ହୋଇ
ରହିଛି ଏଠାରେ;
ତୁମେ କିପରି ଏ ବନ ପୀଠରେ ?।୫୦।

ମହାରାଜ ! ଆମ ନିଜର ଲୋକ
ରାଜ ଭୋଗ ତେଜି ଧରିଏ ଭେକ
ରହିବାରୁ ବାରେ ଦର୍ଶନ ପାଇଁ
ପୁତୁରାକୁ ଧରି ଆସିଛି ଧାଇଁ
ଆଶୀର୍ବାଦ ଦେଇ
ରଖନ୍ତୁ ଆଶ୍ରମେ ବିଦ୍ୟା ଶିଖାଇ।୫୧।

ପୁତୁରା ମୋ-ଏକି ଯଯାତି ପୁଅ !
ଅବିକଳ ଏତ ତାହାରି ମୁହଁ
କୋଳ କରି ଗଣ୍ଡେ ଦେଲେ ଚୁମ୍ବନ-
ପୁରୁ ମୋଡ଼ି ଦେଲା ଯତିଙ୍କ କାନ,
ହସୁଥାନ୍ତି ଦୁହେଁ-
ଆନନ୍ଦାଶ୍ରୁ ଦିଶେ ଶର୍ମିଷ୍ଠା ମୁହେଁ।୫୨।

ଶର୍ମିଷ୍ଠାଙ୍କ ପାଶେ ପୂର୍ବ ବୃତ୍ତାନ୍ତ,
କହୁଥାନ୍ତି ଯତି ଆଦ୍ୟରୁ ପ୍ରାନ୍ତ;
ଶରୀର ମନର ସାମ୍ୟତା ଥିଲେ,
ସିଦ୍ଧି ଲାଭ ସୁଷମ ହୁଏ ଭଲେ,
ଶରୀରକୁ କଷ୍ଟ-
ଦେଇ ହେଲେ ସେ ସିଦ୍ଧି ପଥୁଭ୍ରଷ୍ଟ।୫୩।

ସୁଖ -ସୌନ୍ଦର୍ଯ୍ୟ ଉପଭୋଗ ପାଇଁ;
ବିହି ରଖିଛି ସଂସାରେ ସଜାଇ
ତହିଁ ଆସକ୍ତ ହେଲେ ଲାଗେ ଦୋଷ
ପୂର୍ଣ୍ଣ ବର୍ଜନେ ପ୍ରକୃତି ବିଦ୍ୱେଷ;
ଭାରସାମ୍ୟ ରଖି
ନଚାଲିବାରୁ ହୋଇଥିଲି ଦୁଃଖୀ।୫୪।



କଚ ଦେବ ଏବେ ଅଛନ୍ତି କାହିଁ ?
ଅଛନ୍ତି ସେ ହିମାଳୟରେ ଯାଇଁ
କେଉଁ ତପେ ପୁଣି ବଳିଛି ମନ ?
ଅତି କଠୋର ସେ ତପ ସାଧନ
ଶୁକ୍ର ପ୍ରତି ରୂପ
ଶଙ୍କରେ କରନ୍ତି କଠୋର ତପ।୫୫।

କଚ ଦେବ ଅତି ଉଦାର ମନା
ସୃଷ୍ଟିର କଲ୍ୟାଣ ତାଙ୍କ କାମନା
ଗମ୍ଭୀର-ପ୍ରଶାନ୍ତ-ସାଗର ପରି
ଅନୁରାଗ-ଆସେ ହୃଦରୁ ଝରି
ତାଙ୍କ ଉପଦେଶ
ଲଭି ମୋ ଯାତନା ହେଲା ଉଶ୍ୱାସ।୫୬।

ଶର୍ମିଷ୍ଠା ନିଜ ଜୀବନ କାହାଣୀ
ଯତିଙ୍କ ସମ୍ମୁଖେ ଗଲେ ବଖାଣି,
ତାଙ୍କ ପୁତ୍ର ଚକ୍ରବର୍ତ୍ତୀ ହୋଇବ
ଜାଣି ଦେବଯାନୀ କ୍ରୋଧ ଉଦ୍ଭବ
ମରାଇବା ପାଇଁ
ଷଡ଼ଯନ୍ତ୍ର ଯାହା କଲା ସେ ତହିଁ।୫୭।

କିପରି ଉଦ୍ଧାର କଲେ ରାଜନ
ପରେ ଯା ଘଟିଲା ଘଟଣା ମାନ
ସମସ୍ତ ବିଷୟ ବର୍ଣ୍ଣନା କରି
ବିନୟେ କଲେ ଏ ପରି ଗୁହାରି
ବଞ୍ଚାଇବେ ଏବେ
ପୁରୁ ପ୍ରତିରକ୍ଷା ଭାର ବହିବେ।୫୮।

ଯତି ହେଲେ ଶୁଣି ମନ ଉଷତ
କହିଲେ ଘୁଞ୍ଚିଛି ତୁମ ଦୂରିତ
ମନରେ କିଛି ଚିନ୍ତା କର ନାହିଁ
ସୁଖ-ସୁବିଧାରେ ଦେବି ରଖାଇ
ଯିବି ହିମାଳୟ-
ତହିଁ ଅଛନ୍ତି ମୋ ଶିଷ୍ୟ ନିଚୟ।୫୯।



ହିମାଳୟ ଆଦିବାସୀ ସେମାନେ
ବୀର -ଯୋଦ୍ଧା ଅତି ସାହସୀ ମନେ,
ସେମାନେ ତୁମ୍ଭର ଦାୟିତ୍ୱ ନେବେ
ପୁରୁ ବଡ଼ ହେବା ଯାଏ ପାଳିବେ
ସେଠାରେ ରଖାଇ
ତପ ସାଧନେ ଚାଲିଯିବି ମୁହିଁ।୬୦।

କିଛି ଦିନ ପରେ ତେଜି ଆଶ୍ରମ
ହିମାଳୟ ପଥେ କଲେ ଗମନ
ଆଦିବାସୀ ଶିଷ୍ୟ ଗଣେ ଡ଼କାଇ
ସକଳ ବିଷୟ ଦେଲେ ବୁଝାଇ
ବିଦାୟ ସେ ନେଲେ-
ପୁରୁକୁ ଶୁଭ ଆଶୀର୍ବାଦ ଦେଲେ।୬୧।

ଶର୍ମିଷ୍ଠାଙ୍କୁ ରଥେ ପଠାଇ ଦେଇ
ରାଜା ଟିକେ ମନେ ଆଶ୍ୱସ୍ତ ହୋଇ
ନିଜ କର୍ମର ସମୀକ୍ଷା କରିଲେ
ବିବେକ ନିକଟେ ନିତି ହାରିଲେ
କି କଲି- କି କଲି
ଲକ୍ଷ୍ମୀ -ପ୍ରତିମାକୁ ଭସାଇ ଦେଲି।୬୨।

କୋଳେ ଧରି ଯାକୁ ପ୍ରେୟସୀ ବୋଲି
ଇନ୍ଦ୍ର ସମ୍ପଦକୁ ତୁଛ ମଣିଲି
ସୁରଙ୍ଗ ଅଧରୁ ପୀୟୂଷ ପାନ
କରି-ମଜିଥିଲି ଅଳି ସମାନ
ତା ସୁରକ୍ଷା ପାଇଁ
କିଛି ଯାହା କରି ପାରିଲି ନାହିଁ।୬୩।

ମୋ ପାଇଁ ଅସୀମ ଭକ୍ତି ତାହାର
ତ୍ୟାଗ-ପୂତ-ପ୍ରେମ ପ୍ରୀତ୍ୟୁପହାର
ମନ୍ଦାକିନୀ ସମ ତା ପ୍ରେମ-ନୀର
ଦେବଯାନୀ କ୍ଷୁଦ୍ର-ହ୍ରଦ-ପ୍ରକାର।
ଏତେ ତ୍ୟାଗ ଯାର
ତା ପାଇଁ କଲି ଯା ଏହି ବେଭାର।୬୪।





ବିଶାଳ ରାଜ୍ୟର ସମ୍ରାଟ ହୋଇ
କୋଟି କୋଟି ପ୍ରଜା ପାଳୁଛି ମୁହିଁ
ମୋ ପତ୍ନୀ-ପୁତ୍ରର ସୁରକ୍ଷା ପାଇଁ
ମୋ ଠାରେ ଟିକିଏ ସାମର୍ଥ୍ୟ ନାହିଁ,
ଧିକ -ବଳବୀର୍ଯ୍ୟ
ଏ ରାଜ ପଣେ ବା ଆଉ କି କାର୍ଯ୍ୟ।୬୫।

କାହିଁଥିବ ଏବେ ମୋ ଜୀବଧନୀ
ଲୋତକ ଝରାଇ ଚନ୍ଦ୍ର ବଦନୀ;
କୋଳେ ଶିଶୁ ପୁତ୍ର କି କରୁଥିବ !
କ୍ଷୁଧା ତୃଷାରେ ତ ଜୀବନ ଯିବ;
ରାଜଭୋଗ ଖାଇ
କାଳ କାଟୁଛି ମୁଁ ସୁଖରେ ରହି।୬୬।

ସତେକି ଧରମ ସହିବ ମୋତେ !
କି ବୋଲିବେ ଜନେ ଏହି ଜଗତେ ?
ଯଯାତି -ଦସ୍ୟୁ-ଲମ୍ପଟ-କାମୁକ;
ରଚିବ ସୃଷ୍ଟିରେ ମୋର କଳଙ୍କ
ମରଣର କୋଳେ
ଶୋଇବା ଉଚିତ ମୋର ନିରୋଳେ।୬୭।

ଋଷି ଅଭିଷାପ ଉରଗ ପରି
ଗରଳ ଦେଉଛି ଜୀବନେ ଭରି,
ଦେବଯାନୀ ପରି ସୁନ୍ଦରୀ ପାଇ
ମିଠାକଥା ପଦେ ମିଳିଲା ନାହିଁ;
ମିଠା ଦେଲା ଯିଏ-
ଅକାଳେ ଛାଡ଼ି ପଳାଇଲା ସିଏ।୬୮।

ଏ ପରି ମର୍ମେ ବାହୁନି ଭୂପେଶ
କର୍ମେ ନିନ୍ଦି ଦିନୁ ଦିନୁ ଅବଶ
ରାଜ କାର୍ଯ୍ୟେ ଚିତ୍ତ ବଳିଲା ନାହିଁ
ହସ୍ତ ପଦ ଚଳି -ଚଳିଲା ନାହିଁ
ଗଳିଲା ଲୋତକ-
ବଳିଲା ଚିତ୍ତ ଚୁମ୍ବନେ ଚଷକ।୬୯।





ସୁରା-ସୁରଧୂନୀ ନୀର - ପରାୟେ
ବୀର ଯଯାତିର ମାନସ ମୋହେ
ଅହରହ ଅବଗାହି ସେ -ଧାରେ
ବିଦାୟ୍ ଦେଲେ ଲୋତକର ଧାରେ
ନିଶା - ଜଳେ ବୁଡ଼ି
ଦିବସ - ନିଶି ଗଲେ ପଥ ହୁଡ଼ି ।୭୦।

ଶର୍ମିଷ୍ଠା ବିଚ୍ଛେଦ ନ ପାରି ସହି
ମରମ କଥାକୁ ନ ପାରି କହି
ପ୍ରତିକାର କିଛି କରି ନ ପାରି
ମର୍ମ ଜ୍ୱାଳାକୁ ଦେବାକୁ ପାଶୋରି
ସୁରା ପିଇ ପିଇ
ବିବେକ-ବିଚାର-ଦେଲେ ବି ପିଇ।୭୧।

ତୃଷା ଧାଇଁ ମରୀଚିକା ଯେପରି
ଦୁଃଖ ଭୁଲିବାକୁ ସୁରା ସେପରି
ବେଳକୁ ବେଳ ସେ ବଢାଏ ଦୁଃଖ
ବୁଡ଼ାଏ କ୍ରମଶଃ ବୁଦ୍ଧି ବିବେକ
ନଷ୍ଟର ଯାଗତି
ଅଚିରେ ହୁଏ ସେ ଗତି ପ୍ରାପତି।୭୨।

ଦିନେ ଅତିଶୟ୍ ମଦିରା ପିଇ
ଆତ୍ମଜ୍ଞାନ ରାଜା ଦେଲେ ହଜାଇ
ରାଣୀହଂସପୁରେ ପ୍ରବେଶ ହେଲେ
ଦେବଯାନୀଙ୍କୁ ଏ ମନ୍ତ ବୋଇଲେ
ଆସରେ ସଜନୀ !
ଚାନ୍ଦିନୀ କୋଳେ ଯାପିବା ରଜନୀ।୭୩।

ତବ ବିରହେ ମୋ ପ୍ରାଣ ଅସ୍ଥିର
ଶିରିଷାଙ୍ଗୀ ବାରେ କୋଳରେ ଧର
ଗଣ୍ଡେ ମଣ୍ଡି ଦିଅ ଚାଣ୍ଡେ ଚୁମ୍ବନ
ଦଣ୍ଡେ ଡ଼େରି କଲେ ଯିବ ଜୀବନ
ବିପରୀତେ ଦେଇ-
ମାର ଶରୀରୁ ଦିଅ ନିବର୍ତ୍ତାଇ।୭୪।





ଦେବଯାନୀ ପ୍ରୀତି-ବାରୁଦ-ସ୍ତୁପେ
ଯଯାତି ଚାଟୁକ୍ତି -ଅନଳ ରୂପେ-
ସଂଯୋଗ ହୋଇ ହେଲା ବିସ୍ଫୋରଣ
ସ୍ତବ୍ଧ ହେଲେ ପ୍ରାସାଦ ବାସୀଗଣ
କାନେ ହାତ ଦେଇ,
ପରସ୍ପରକୁ ହେଲେ ଚାହାଁଚାହିଁ।୭୫।

ମଦ ଖାଇ କେବେ ଆସିବ ନାହିଁ
ପ୍ରତିଜ୍ଞାକୁ ଦେଲ ନିଶାରେ ଖାଇ
ଲଜ୍ଜା ନାହିଁ ତୁମେ ବୋଲାଅ ରାଜା
ଯା-ଯା-ମୋ ପାଖରୁ ବାହାରି ଯା-ଯା
ତୁମକୁ ମୁଁ ପାଇ-
ବଞ୍ଚି ଅଛି ଯାହା ମରି ନ ଯାଇ।୭୬।

ଏପରି ନକହ ପରାଣ ମିତ,
ମାରଶର ଦହେ ଅନବରତ;
ଅଧର ସୁଧା ଦିଅରେ ଚଖାଇ
ବକ୍ଷରେ ଧରି ଦିଅରେ ଲଖାଇ
ପୀରତି ଶିଖାଇ-
ମଦିରାକ୍ଷି ରସ ଦିଅ ଚଖାଇ।୭୭।

ନିର୍ଲଜ୍ଜ ସ୍ୱଭାବ ତୁମର ଦେଖି
ନ ପାରିବି ଆଉ ଜୀବନ ରଖି
ଏକ୍ଷଣି ଯିବି ମୁଁ ପିତାଙ୍କ ପାଶ
କରିବି ସକଳ କଥା ପ୍ରକାଶ
ତାଙ୍କୁ ଡ଼ାକି ଆଣି
ଉଚିତ ଶାସ୍ତି ଦିଆଇ ବି ପୁଣି।୭୮।

ଏହା ଶୁଣି ରାଜା ପାଇଲେ ଭୟ
କିଞ୍ଚିତ ଚେତନା ହେଲା ଉଦୟ
କହିଲେ ତେବେ ମୁଁ ଯାଉଛି ଫେରି
ଦେବଯାନୀ କହି - ନୁହେଁ ସେପରି
କରିଯା ନିୟମ
ନ ଛୁଇଁବ ମୋତେ କାଳ ତମାମ।୭୯।



ନିରୂପାୟ ସେହି ନିୟମ କରି
ନିରାଶେ ନୃପତି ଆସିଲେ ଫେରି
ପ୍ରାସାଦ ଛାଡ଼ି ଅଶୋକ କାନନେ-
ରହିବାକୁ ଇଛା ବଳାଇ ମନେ
ଆସିଲେ ଦଉଡ଼ି
ଅଗସ୍ତିଙ୍କ ଶାପ ହୁଙ୍କାରେ ଉଡ଼ି ।୮୦।

ଶର୍ମିଷ୍ଠା ଶୟନ କକ୍ଷରେ ମିଳି
ପୂର୍ବ ସ୍ମୃତି ମାନ ମନରେ ଭାଳି
କାହିଁ ଥିବୁ ଏବେ ? କିପରି ମୁହିଁ
ବଞ୍ଚିବିରେ ସହୀ ! ତୋତେ ହରାଇ
ଦେବଯାନୀ କାତି
ବିଦାରି ଦେଇଛି ଆଜି ମୋ ଛାତି ।୮୧।

କାମାନଳେ ତନୁ ଯାଉଛି ଜଳି
ଫୁଲଶର ଯାଏ ମରମେ ଗଳି
ବିରହ-ଜଳେ ମୁଁ ଯାଉଛି ଭାସି
ପ୍ରୀତି -ନିଶା ଦିଏ ବିବେକ ଗ୍ରାସୀ-
କାଳ ହୋଇ ମାର
ମନ -ମୀନକୁ କରୁଛି ସଂହାର ।୮୨।

ଯୌବନ ସହିତ ଧନ ସମ୍ପତ୍ତି
ଅଛି ପ୍ରଭୂତ୍ୱ କ୍ଷମତା ପ୍ରଭୃତି
ଅବିବେକି ତାର ଅଭାବ ଯାହା
ସୁରା ପାନରେ ପୂର୍ଣ୍ଣ ହେଲା ତାହା
ଘଟିଲା ଅନର୍ଥ
ଶାସ୍ତ୍ର ବଚନ କି ହୋଇବ ବ୍ୟର୍ଥ ।୮୩।

ସୁରା-ସାଗରେ ବୁଡ଼ି ଗଲେ ରାଜା
ଉଡ଼ାଇଲେ କାମ -ବିଜୟ ଧ୍ୱଜା
ନିତି ନୂଆ ନୂଆ କିଶୋରୀ ଧରି
ବିଳସୀ ବିଳାସେ ଦିବା - ଶର୍ବରୀ
ସବୁଦେଲେ ଛାଡ଼ି
କାମ ଅର୍ଚ୍ଚନାରେ ରହିଲେ ଜଡ଼ି ।୮୪।





ମହାରାଣୀ ରାଜ୍ୟ ପରିଚାଳନା
କରୁଥାନ୍ତି ହୋଇ ଉକ୍ଷତ ମନା
ରାଜାଙ୍କ ଖବର ରଖନ୍ତି ନାହିଁ
ସତେ ଅବା କିଛି ସମ୍ପର୍କ ନାହିଁ
ଦିନ-ମାସ-ବର୍ଷ
ଏକ ପରେ ଏକ ହୁଅଇ ଶେଷ ।୮୫।

କମନୀୟ ହିମାଳୟ ମାଳରେ
ବୀର ଆଦିବାସୀ ଶିଶୁ ମେଳରେ
ପୁରୁ ବେଳ କଟି ଯାଏ ଖେଳରେ-
ଶୁକ୍ଳ ପକ୍ଷେ ଯଥା ଶଶି-କଳାରେ
ଯେପରି ତୁଳସୀ-
ଦୁର୍ବାଦଳରେ ତା ଶୋଭା ବିକଶି ।୮୬।

ନିତି ପ୍ରତି ହିଂସ୍ର ପଶୁ ଗହଣେ
ମତି -ଭୀତି ହୀନ -ବୁଲିଣ-ବଣେ
ଶରୀର ପୁଷ୍ଟ ମଲ୍ଲ ଯୁଦ୍ଧ କରି
ଲକ୍ଷ୍ୟ ଅବ୍ୟର୍ଥ ଧନୁ-ତୀର ମାରି
ଯଥା ସବ୍ୟସାଚୀ
କାବ୍ୟ ତାରାକି ବିରାଜୁଛି ପ୍ରାଚୀ ।୮୭।

କେବେ ବା ହରିଣ କେବେ ବରାହ
ବୁହା ହୁଏ ହୋଇଣ ଭାର ବାହ
ସଭିଙ୍କ ଆଗରେ ପୁରୁଙ୍କୁ ଦେଖି
ଶର୍ମିଷ୍ଠା ଖୁସୀରେ ପୋଛନ୍ତି ଆଖି
ପଣତ ଭିଜାଇ
ସୁଖ ଦେବା ଦଇବକୁ ବଧାଇ ।୮୮।

ଅକସ୍ମାତ ଦିନେ ଶାର୍ଦ୍ଦୁଳ ସାଥେ
ଭେଟ ହୋଇଗଲା ଅରଣ୍ୟ ପଥେ
କୁଦି ପଡ଼ିଲା ଉପରେ ଶାର୍ଦ୍ଦୁଳ
କୁଣ୍ଢାଇ ଧରି ପୁରୁ ମହାବଳ
ପାଟି ଦେଲେ ଫାଡ଼ି
ବିକଳେ ଶାର୍ଦ୍ଦୁଳ ଛାଡ଼ିଲା ରଡ଼ି ।୮୯।





ବୀରତ୍ୱ ସହିତ ବିନୟ ଭାବ
ଶିଷ୍ଟାଚାର -ମିଷ୍ଟାଳାପ ସ୍ୱଭାବ
ପୁରି ରହିଥିଲା ପୁରୁଙ୍କ ପାଶେ
ତା ଜାଣି ଶର୍ମିଷ୍ଠା ମନ ହରଷେ
କହିଲେ ବୁଝାଇ
ଜନ୍ମ ରହସ୍ୟାଦି ବୃତ୍ତାନ୍ତ ନେଇ ।୯୦।

ସବୁ ଶୁଣି ପୁରୁ ମନ ଉଷତ
ହସ୍ତିନା ଯିବାକୁ ମଣି ଉଚିତ
ରହିଲେ ସୁଯୋଗ ଅପେକ୍ଷା କରି
କେବେ ଘୁଞ୍ଚିବ ଏ ଅମା -ଶର୍ବରୀ
ଆସିବ ସୁଦିନ
ହେବ ମାଆଙ୍କର ଦୁଃଖ ମୋଚନ ।୯୧।

ପୁରୁ ବାଲ୍ୟ ସାଥି ଥିଲା-କଳିକା
କ୍ଷତ୍ରୀୟ କନ୍ୟା ସୁନ୍ଦରୀ ବାଳିକା
କାୟ ସାଥେ ଛାୟା ପରାୟେ ରହି
କଳିକା କିଶୋରୀ ଗଲାଣି ହୋଇ
ପୁରୁତା ସମ୍ପତ୍ତି
ପୁରୁ ବିନା ନାହିଁ ତା ଅନ୍ୟଗତି ।୯୨।

ଚାରୁ ହାସିନୀ-କୋରକ ରଦନା
ସ୍ୱର୍ଣ୍ଣ ବେଣୀ ଝିନ ପାଟ ବସନା
ଚାରୁ ଚଳାପାଙ୍ଗୀ ଚମ୍ପକ ଦେହୀ
କୋଟିକେ ଗୋଟିଏ ଥିବେକି ନାହିଁ
ତାପରି-ଲଳନା
ପୀରତିରେ ତାର ନାହିଁ ଛଳନା ।୯୩।

ଉତ୍ତର ଦିଗୁ ଦସ୍ୟୁ ଦଳ ଆସି
ହସ୍ତୀନା ସାମ୍ରାଜ୍ୟ ସୀମାରେ ପଶି
କଲେ ଅତ୍ୟାଚାର ଲୁଣ୍ଠନ କେତେ
ପ୍ରଜାଗଣେ ଏଣେ ତେଣେ ତରସ୍ତେ
ବିକଳେ ଧାଇଁଲେ
ପଳାଇ ଯାଇ ଜୀବନ ପାଇଲେ ।୯୪।





ଦୂତଠାରୁ ଏହି ବାରତା ପାଇ
ମହାରାଣୀ ମନେ ଚିନ୍ତିତା ହୋଇ
ଯୁବରାଜଙ୍କୁ ଯୁଦ୍ଧେ ସଜ କରି
ସୈନ୍ୟ ବଳ କିଛି ସାଥିରେ ଧରି
ଦେଲେ ପଠିଆଇ
ଦୁଷ୍ଟ ଦସ୍ୟୁ ଦଳ ଦମନ ପାଇଁ ।୯୫।

ଦସ୍ୟୁ ଦଳ ସାଥେ କରି ସଂଗ୍ରାମ
ଜୟ କରିବାକୁ ହୋଇ ଅକ୍ଷମ
ପରାଜୟ ମାଳ ପକାଇ ଗଳେ
ଯଦୁ ରହିଲେ ଦସ୍ୟୁ ବନ୍ଦୀଶାଳେ
ଦୂତ ଜଣାଇଲା
ଶୁଣି ଦେବଯାନୀ ଚେତା ହଜିଲା ।୯୬।

ଅମାତ୍ୟଙ୍କୁ ଡ଼ାକି ରାଜାଙ୍କ ପାଶ
ଯୁଦ୍ଧେ ଯିବାପାଇଁ ଦେଲେ ସନ୍ଦେଶ
ଯଦୁର ଜୀବନ ସଂକଟାପନ୍ନ
ଦସ୍ୟୁ ଆକ୍ରମଣେ ରାଜ୍ୟ ଉଛନ୍ନ
ଯୁଦ୍ଧେ ଯିବାପାଇଁ
ସଜ ହୁଅନ୍ତୁ ନିଜେ ନର ସାଇଁ ।୯୭।

ଅମାତ୍ୟ ଅଶୋକ କାନନେ ଯାଇ
ରାଜାଙ୍କୁ କହିଲେ ସବୁ ବୁଝାଇ
ଶୁଣି ମହାରାଜ ମନରେ ରୋଷ
କହିଲେ ଗଲା ଅଠର ବରଷ
ରାଣୀ ଥିଲେ ଶୋଇ
ଆଜି ଯାଏ ଦିନେ ଖୋଜିଲେ ନାହିଁ ।୯୮।

ଦସ୍ୟୁ ହାତେ ଯଦୁ ଯାଇଛି ଯାଉ
ରାଜ୍ୟ ସାରା ପଛେ ଉଛନ୍ନ ହେଉ
ରାଣୀଙ୍କୁ ନେଲେ ବି ଦସ୍ୟୁ ସମାଜ
ତଥାପି ଯୁଦ୍ଧେ ମୁଁ ନହେବି ସଜ
କହି ଦିଅ ଯାଇଁ
ରଜା ଯଯାତିର ସିଦ୍ଧାନ୍ତ ଏହି ।୯୯।





ମନ୍ତ୍ରୀଙ୍କଠାରୁ ରାଜାଙ୍କ ବଚନ
ଶୁଣି ରାଣୀ ଶୋକ-କ୍ରୋଧେ ଉଚ୍ଛନ୍ନ
ଧୈର୍ଯ୍ୟ ସ୍ତମ୍ଭକୁ ଦେଲା ଦୋହଲାଇ
ସଂକଳ୍ପ ବଦ୍ଧ ପ୍ରତିଶୋଧ ପାଇଁ
ପିତାଙ୍କୁ ଜଣାଇ
ସମୁଚିତ ଶାସ୍ତି ରାଜାଙ୍କୁ ଦେଇ । ୧୦୦ ।

ଦସ୍ୟୁ ଆକ୍ରମଣ ବାରତା ପାଇ
ପୁରୁ ଏଣେ ଆସି ଅଛନ୍ତି ଧାଇଁ
ସାଥେ ଆଦିବାସୀ ଯୁବକ କେତେ
ଦସ୍ୟୁ ଦଳ ସାଥେ ଲଢି ନିର୍ଘାତେ
ଦେଲେ ଘଉଡ଼ାଇ
ଯଦୁଙ୍କୁ ଆଣିଲେ ପୁଣି ଛଡ଼ାଇ । ୧୦୧ ।

ଦୂତ ଆସି ମହାରାଣୀଙ୍କ ପାଶେ
ଜଣାଇଲା ବାର୍ତ୍ତାମାନ ହରଷେ
ଯୁବରାଜ ଆସୁଅଛନ୍ତି ଫେରି
ଦସ୍ୟୁ ଦଳ ଯାଇଅଛନ୍ତି ହାରି
ରାତି ଛ ଘଡ଼ିକୁ
ଭେଟିବେ ଏଠାରେ ମହାରାଣୀଙ୍କୁ । ୧୦୨ ।

ଶୁଣି ମହାରାଣୀ ହୋଇ ବିସ୍ମିତ !
ଯଦୁ କି ଦସ୍ୟୁଙ୍କୁ କଲା ପରାସ୍ତ ?
ପୁରୁ ନାମେ ଏକ ଯୁବକ ଆସି
ସାଥିରେ ଥିଲେ କେତେ ଆଦିବାସୀ
ଦସ୍ୟୁଙ୍କୁ ହରାଇ
ଯୁବରାଜଙ୍କୁ ଆଣିଲେ ଛଡ଼ାଇ । ୧୦୩ ।

ଯୁବରାଜ ସ୍ନେହେ ପୁରୁଙ୍କୁ ଧରି
ସୈନ୍ୟ ବଳ ସାଥେ ଆସନ୍ତି ଫେରି
ଜୟ ଶବଦରେ ଦିଗ ଉଚ୍ଛୁଳେ
ସାଗର ନିର୍ଘୋଷ ଯେହ୍ନେ କଲ୍ଲୋଳ
ରାତି ଛ ଘଡ଼ିକୁ
ଭେଟିବେ ପ୍ରାସାଦେ ମହାରାଣୀଙ୍କୁ । ୧୦୪ ।





ଅନ୍ୟ ଏକ ଦୂତ ପହଞ୍ଚି ଯାଇ
ଜଣାଇଲା ପୁଣି ବିନୟ ହୋଇ
ଶୁକ୍ରାଚାର୍ଯ୍ୟ ନିଜ ତପସ୍ୟା ସାରି
ବିଜେ କରୁଛନ୍ତି ହସ୍ତୀନା ପୁର
ରାତି ଚାରି ଘଡ଼ି
ବେଳକୁ ଏଠାରେ ଯିବେ ହାବୁଡ଼ି ।୧୦୫।

ତେଣେ ଶର୍ମିଷ୍ଠା ପୁତ୍ରକୁ ନପାଇ
କଳିକାକୁ ନିଜ ସାଥିରେ ନେଇ
ରାଜ ପୁରି ଠାରୁ ଅଳପ ଦୂରେ
ଆସି ଜଗିଥାନ୍ତି ମନ ଅସ୍ଥିରେ
ଅଘଟଣ ହେଲା
କଳିକାକୁ କିଏ ଚୋରାଇ ନେଲା ।୧୦୬।

ରାଜାଙ୍କର ଲୋକ ଔଷଧ ଦେଇ
କଳିକାକୁ ଚେତା ଶୂନ୍ୟ କରାଇ
ନୃପ ଉପଭୋଗ ପାଇଁ ଯତନେ
ଆଣି ରଖିଥାନ୍ତି ଅଶୋକ ବନେ
ସ୍ୱର୍ଣ୍ଣକେଶୀ ପାଇ
ନୃପତିଙ୍କ ଆନନ୍ଦ ସୀମା ନାହିଁ ।୧୦୭।

କାମ ଯଜ୍ଞାନଳେ ପୂର୍ଣ୍ଣ ଆହୁତି
ଦେବେ ବୋଧେ ଆଜି ରାଜା ଯଯାତି
ତେଣୁ ବୁଡ଼ି ଯାଇ ସୁରା ସାଗରେ
ଜଗିଥାନ୍ତି ପ୍ରେମ ଅନୁରାଗରେ
ପାଇଲେ ଚେତନା
ସ୍ୱର୍ଣ୍ଣକେଶୀ ହୋଇବ ବିବସନା ।୧୦୮।

ଦାସୀ ଏକ ହୋଇ ଅଣ ନିଶ୍ୱାସୀ
ନୃପତି ସମୀପେ ସତ୍ୱରେ ଆସି
ଜଣାଇଲା ଭୟେ ହୋଇ କମ୍ପିତା
ଶୁକ୍ରାଚାର୍ଯ୍ୟ ଆଉ ତାଙ୍କ ଦୁହିତା
ଆସୁଛନ୍ତି ରଥେ
କ୍ରୋଧେ ଜଳେ ନିଆଁ ଋଷିଙ୍କ ନେତ୍ରେ ।୧୦୯।





ରାଜାଙ୍କ ପିଣ୍ଡରୁ ଜୀବନ ଛାଡ଼ି
ଯିବ ଅବା ସତେ ପଡ଼ିବ ଗଡ଼ି
କାଛେ ଝୁଲୁଥିବା ଦର୍ପଣ ଧରି
କଷ୍ଟରେ ନିଜକୁ ସମ୍ଭାଳି କରି
ଥରୁଥାଏ କାୟ
ଶୁକ୍ରାଚାର୍ଯ୍ୟ ଶାପେ ଭୟ ଉଦୟ ।୧୧୦।

ମଧ୍ୟାହ୍ନ କାଳୀନ ମାର୍ତ୍ତଣ୍ଡ ସମ
ମୁମୂର୍ଷୁ ସମୀପେ କି ଅବା ଯମ
ଶଶକ ପାଶେ କି ସିଂହ ଗର୍ଜନ
ବଜ୍ରାଘାତେ ଝଡ଼େ କି ସାନୁମାନ
ପ୍ରଳୟ ଅନଳ
ସମ ଶୁକ୍ରାଚାର୍ଯ୍ୟ ତେଜ ପ୍ରବଳ ।୧୧୧।

ଯଯାତିଙ୍କ ଆଗେ ମିଳିଲେ ଆସି
ଚନ୍ଦ୍ରକୁ ରାହୁକି ଦେବାକୁ ଗ୍ରାସୀ
ରାଜାଙ୍କ ଅବସ୍ଥା ଚକ୍ଷୁରେ ଦେଖି
ବୁଝିବାକୁ କିଛି ନ ଥାଏ ବାକି
ନୀରବ ଯଯାତି
ନିଶାବସେ ନ ଜଣାଇ ପ୍ରଣତି ।୧୧୨।

ରାଜ୍ୟ ପରିଚାଳନାରେ ବିମୁଖ
ଦେବଯାନୀ ମନେ ଦେଇଛ ଦୁଃଖ
ସୁରା ସାଗରରେ ଯାଇଛ ବୁଡ଼ି
ପର ରମଣୀ ପ୍ରେମେ ପଥ ହୁଡ଼ି-
କରିଛ ଯେ ପାପ
ସେଥିପାଇଁ ଆଜି ପାଇବ ଶାପ ।୧୧୩।

ଭଗ୍ନ ସ୍ୱରରେ ଡ଼ରି-ଥରି-ରାଜା
କହିଲେ କ୍ଷମିବେ ଦୋଷ ମୋର ଯା
ଏଥିପାଇଁ ଏକା ନୁହେଁ ମୁଁ ଦାୟୀ
ମୋର ଏ ପତନ ତାହାରି ପାଇଁ
କହୁ ଦେବଯାନୀ
ଷଡ଼ଯନ୍ତ୍ର ଜାଲ କେ ଥିଲା ବୁଣି ।୧୧୪।





ରାଜା ହୋଇ ଅବିଚାର କରିଛ
ରାଜ-ଦଣ୍ଡର ମର୍ଯ୍ୟାଦା ଲଙ୍ଘିଂଛ
ଯୌବନ ମଦେ ହୋଇଛ ଗର୍ବିତ
ତେଣୁ ଅଭିଶାପେ ହେବ ଦଣ୍ଡିତ
ଜରାଜୀର୍ଣ୍ଣ ହୋଇ
ବାର୍ଦ୍ଧକ୍ୟ ଭୋଗ କର ବଞ୍ଚି ରହି ।୧୧୫।

ତପଃ ଶକ୍ତିର କି ଅଦ୍ଭୁତ ବଳ
କହୁ କହୁ ରାଜା ଭୋଗିଲେ ଫଳ
ଦର୍ପଣକୁ ଚାହିଁ ଚମକି ଗଲେ
ନିଜକୁ ନିଜେ ଚିହ୍ନି ନ ପାରିଲେ
କାନ୍ଦି କଇଁ କଇଁ
ପଡ଼ିଲେ ଭୂତଳେ ମୂର୍ଚ୍ଛିତ ହୋଇ ।୧୧୬।

ଦେବଯାନୀ ମନେ ଥିଲା ତ କୋପ
ଚାହିଁ ନ ପାରି ସେ ସ୍ୱାମୀଙ୍କ ରୂପ
ଅତି ବିକଳେ କରିଲେ କ୍ରନ୍ଦନ
ଚେତା ପାଇ ଉଠି ପୁଣି ରାଜନ
ବିନୟ ବଚନ
କହି ଲୋଡ଼ିଲେ ପ୍ରତିକାର ମାନ ।୧୧୭।

ଝିଅ ଜ୍ୱାଇଁଙ୍କର ପ୍ରାର୍ଥନା ଶୁଣି
କିଛି କ୍ଷଣ ମୁନି ରହିଲେ ତୁନି
ରକ୍ତଜାତ ନିଜ ସନ୍ତାନ ଯେବେ
ସ୍ୱେଚ୍ଛାରେ ଯୌବନ ଦାନ କରିବେ
ବାର୍ଦ୍ଧକ୍ୟକୁ ନେବେ
ତେବେ ଅବା ରାଜା ଭଲ ହୋଇବେ ।୧୧୮।

ଚଡ଼କ ପରେ ପଡ଼ିଲା ମଡ଼କ
କି ବୁଦ୍ଧି କରିବେ ହଜେ ବିବେକ
ଏଣେ ସ୍ୱାମୀ ତେଣେ ପୁତ୍ରର ସ୍ନେହ
ଦେବଯାନୀଙ୍କର ଶୁଖିଲା ମୁହଁ
ଶୁକ୍ର ହୋଇ ଦୁଃଖୀ
ବାହାରିଲେ ରାଜ - ପୁର ଉପେକ୍ଷି ।୧୧୯।



ଯିବା ବେଳେ କହିଗଲେ ଏପରି
ଆଉ ତୋ ପାଶେ ନ ଆସିବି ଫେରି;
ମୃତ ସଞ୍ଜୀବନୀ ତୋ ପାଇଁ ଗଲା
ଏବେ ଏତପରୁ ଅନର୍ଥ ହେଲା
ତୋ ଦୁଃଖେ ତୁ ରହ
ପିତା ବୋଲି ଆଉ ମୋତେ ନ କୁହ ।୧୨୦।

ଯଦୁ-ପୁରୁ ସିଂହ ଦ୍ୱାରେ ପ୍ରବେଶି
ଶୁଣିଲେ ଆସିଛନ୍ତି ଅଜା-ଋଷି;
ଅଶୋକ ବନକୁ ଆସିଲେ ଧାଇଁ
ଯଯାତିଙ୍କୁ ଦେଖି ଛାନିଆଁ ହୋଇ
ପଚାରି ବୁଝିଲେ
ଅଜା ଆସି ବାପା କାଳ ହୋଇଲେ ।୧୨୧।

ଯଥା ସମୟରେ ଯଦୁକୁ ପାଇ
ଯଯାତିଙ୍କ ଆଶା ଉଠିଲା ଚେଇଁ
କହିଲେ ବାବୁ ତୋ ଯୌବନ ଦେଇ
କିଛି କାଳ ମୋର ଅବସ୍ଥା ନେଇ
ହରିବୁକି ଦୁଃଖ
ପରେ ପାଇବୁ ପୁଣି ରାଜ ସୁଖ ।୧୨୨।

ହଁ ନାହିଁ କିଛି ନପାରି କହି
ଯଦୁ ଦେବଯାନୀ ମୁହଁକୁ ଚାହିଁ
ରହିବାରୁ, ରାଣୀ ଦେଲେ ଉତ୍ତର
ନିଜ କର୍ମର ଫଳ ଭୋଗ ହର
ଯଦୁ ହେବ ରାଜା
ଭୋଗୁଥାଅ ବସି ବାର୍ଦ୍ଧକ୍ୟ ସଜା ।୧୨୩।

ପୁରୁ ଶୁଣୁ ଥିଲେ ପାଖରେ ରହି
ସହସା କହିଲେ ରାଜାଙ୍କୁ ଚାହିଁ
ମୁହିଁ ତୁମର ରକ୍ତଜ ସନ୍ତାନ
ଶର୍ମିଷ୍ଠାର ଅଟେ ପ୍ରିୟ ନନ୍ଦନ
ଶିଖାଇଛି ମାଆ
ତ୍ୟାଗ ଜୀବନର ପ୍ରଧାନ ରାହା ।୧୨୪।





ଦେବାକୁ ମୁଁ ରାଜି ମୋର ଯୌବନ
ତୁଷ୍ଟକର ତବ ଲାଳସାମାନ
ରାଜ ସିଂହାସନ ଲୋଡ଼ା ମୋ ନାହିଁ
ଯଦୁ ବସନ୍ତୁ ତହିଁ ରାଜା ହୋଇ
ପିତା ତବ ସୁଖ
ଦେଖୁଥିବି ରହି କାଳକ ଯାକ ।୧୨୫।

ତେଜ ଭରା-ଦୃଢ଼ କଣ୍ଠର ସ୍ୱର
ତୋଳୁ ଥିଲା ପ୍ରତି ଧ୍ୱନି-ନିକର
ଚକିତ-ଜନତା ଥାଆନ୍ତି ଚାହିଁ
ଦେବଯାନୀ ମୁଖେ ବଚନ ନାହିଁ
ଜୟ ଜୟ ପୁରୁ
ଶବଦେ ପୁର କମ୍ପୁଥାଏ ଦୂରୁ ।୧୨୬।

ନୀଳ କଣ୍ଠ ଶିରେ ଗଙ୍ଗା -ଉଦକ
ଢାଳିଲା ପରାୟେ ତୁଟିଲା ଦକ
ଋଷି ବଚନ ଫଳିଲା ପ୍ରତ୍ୟକ୍ଷ
ଯଯାତି - ଯୌବନ ପୁରୁ-ବାର୍ଦ୍ଧକ୍ୟ
ଅବସ୍ଥା -ଭଜିଲେ,
ଶର୍ମିଷ୍ଠା ଏକାଳେ ପହଞ୍ଚି ଗଲେ ।୧୨୭।

ଶର୍ମିଷ୍ଠାଙ୍କୁ ରାଜା ଦେଲେ ଅନାଇଁ
ଶର୍ମିଷ୍ଠା ରାଜାଙ୍କୁ ଅଛନ୍ତି ଚାହିଁ
ସାଗର ସରିତ ମିଳନ ହେଲା
ଛଅ ଚକ୍ଷୁରୁ ଲୋତକ ଝରିଲା
ପୁରୁ-ଶର୍ମା-ରାଜା
ବାଜିଲା ମଧୁର -ମିଳନ ବାଜା ।୧୨୮।

ପୁରୁ ଜନନୀଙ୍କୁ ଓଳଗି ହୋଇ
କହିଲା ସକଳ କଥା ବୁଝାଇ
ଶର୍ମିଷ୍ଠାଙ୍କ ନେତ୍ରୁ ଆନନ୍ଦ ଜଳ
ବହୁଥିଲା ଲଙ୍ଘି ଧୈର୍ଯ୍ୟ କୂଳ
ଉପଯୁକ୍ତ ପୁତ୍ର
ପିତା ହିତରେ ଲାଗିଥାଏ ମାତ୍ର ।୧୨୯।





ପୁରୁ ଶର୍ମିଷ୍ଠାଙ୍କ ଭାଷା ପ୍ରବନ୍ଧ
ଶୁଣି ଭାଙ୍ଗିଗଲା ହୃଦୟ ବନ୍ଧ
ଶର୍ମିଷ୍ଠାଙ୍କୁ ରାଜା କହିଲେ ଚାହିଁ
ଧନ୍ୟ ଧନ୍ୟ ମୁହିଁ ତୁମକୁ ପାଇ
ତୁମେ ମନ୍ଦାକିନୀ !
ତୁମ ସମାନ ନୁହେଁ ଦେବଯାନୀ ।୧୩୦।

ତୁମ ପ୍ରତି ଯେତେ ଯାହା ଅନ୍ୟାୟ
କରିଛି ମୁଁ ତାହା ଅବର୍ଣ୍ଣନୀୟ
ତଥାପି ମନରେ ଆସିନି କ୍ଷୋଭ
ମୋ ଠାରେ ତୁମର ଷୋଳଣା ଲୋଭ
ତ୍ୟାଗର ପ୍ରତୀକ
ତୁମଠାରୁ କିଏ କାହିଁ ଅଧିକ ? ।୧୩୧।

ପତ୍ନୀ ହୋଇ ତୁମେ କରିଛ ତ୍ୟାଗ
ପୁତ୍ର ତ୍ୟାଗର ମୂଲ୍ୟ ଅପବର୍ଗ
ପିତା ହୋଇ ମୁଁ ନ କରିଛି କିସ ?
ସ୍ୱହସ୍ତେ ପେଇଛି ବାର୍ଦ୍ଧକ୍ୟ ବିଷ
ନିଜ ସୁଖ ପାଇଁ
ଆତ୍ମ ଜ୍ଞାନକୁ ଜଳାଞ୍ଜଳି ଦେଇ ।୧୩୨।

ଜାଣିଲି ଜୀବନେ ତ୍ୟାଗ ମହତ୍ତ୍ୱ
ଭୋଗେ ଜୀବନ ନୁହେଁ ଚରିତାର୍ଥ
ତ୍ୟାଗଠାରୁ ବଳି ତପସ୍ୟା ନାହିଁ
ତ୍ୟାଗୀ ହୋଇ ପାରେ ବିଶ୍ୱବିଜୟୀ
କରିବି ମୁଁ ତ୍ୟାଗ
ପୁରୁକୁ ତାହାର ଯୌବନ ଆଗ ।୧୩୩।

ଭୋଗ ବାସନାର ସୀମା ଯେ ନାହିଁ
ଯେଣେ ଇଚ୍ଛା ତେଣେ ଟାଣି ନିଅଇ
ଏକ ପରେ ଏକ ଅନେକ ଆସି
ବିବେକ ବିଚାର ଦିଅଇ ଗ୍ରାସୀ
ନାହିଁ ଦରକାର
ପୁରୁ ଫେରି ପାଉ ଯୌବନ ତାର ।୧୩୪।





ସହସା ଘୂରିଲା ରାଜାଙ୍କ ମୁଣ୍ଡ
ଘୂରିଲା କି ସପ୍ତ ମେଦିନୀ ଖଣ୍ଡ
ଗଛ କାଟିଲା ପରାୟ ଭୂତଳେ
ମୂର୍ଚ୍ଛିତ ହୋଇ ତତ୍‌କ୍ଷଣେ ପଡ଼ିଲେ
କି ହେଲା କି ହେଲା
ଶବଦେ ଚୌଦିଗ ଉଚ୍ଛୁଳି ଗଲା ।୧୩୫।

ଦଇବ ବିଧାନ ଅତି ବିଚିତ୍ର
ଏକାଳେ କଚ ହେଲେ ଉପଗତ
ମନ୍ତ୍ର ଜଳ ସିଞ୍ଚି ପୁରୁ ଯୌବନ
ଫେରାଇ ଆଣିଲେ ଋଷି ରତନ
ରାଜାଙ୍କୁ ଚେତାଇ
ମୁଖେ ଜଳ ସିଞ୍ଚି ଦେଲେ ଉଠାଇ ।୧୩୬।

ଚେତା ପାଇ ରାଜା ଉଠିଲେ ବସି
ତପସ୍ୟାର ଶକ୍ତି ମନେ ପ୍ରଶଂସି
କହିଲେ କଚଙ୍କୁ ବିନୟ ହୋଇ
ରାଜ କାର୍ଯ୍ୟରେ ଆଉ ଇଚ୍ଛା ନାହିଁ
ବାନପ୍ରସ୍ଥେ ଯିବି
ଆଶ୍ରମରେ ରହି ଦିନ କାଟିବି ।୧୩୭।

ଦେବଯାନୀ ତହୁଁ ମୁହଁ ଫିଟାଇ
କହିଲେ ପ୍ରାସାଦେ ଇଚ୍ଛା ମୋ ନାହିଁ
ମୁଁ ମଧ୍ୟ ତୁମ ସହିତରେ ଯିବି
ପାଖେ ପାଖେ ରହି ସେବା କରିବି
ଯଦୁ ହେଉ ରାଜା
ଅଭିଷେକ ହେଉ ବିଦାୟ ବାଜା ।୧୩୮।

ରାଣୀଙ୍କ ବଚନ ପ୍ରଜାଏ ଶୁଣି
କହିଲେ ମନରେ ଅନେକ ଗୁଣି
ରାଜା ହେବା ପାଇଁ ପୁରୁ ଯେ ଯୋଗ୍ୟ
ବୀରର ଅଟେ ବସୁନ୍ଧରା ଭୋଗ୍ୟ
ସର୍ବ ଗୁଣେ ପୂର୍ଣ୍ଣ
ପୁରୁ ହେବେ ଏକା ପ୍ରଜାରଞ୍ଜନ ।୧୩୯।





ପ୍ରଜାଙ୍କ ବଚନ ରହିଲା ଶେଷେ
ଅଭିଷିକ୍ତ ହେଲେ ପୁରୁ ହରଷେ
କଚ ଦେବ ଦେଲେ ଶୁଭ ଆଶିଷ
ହେଲେ ସକଳ ଜନେ ମନେ ତୋଷ
ଗଲେ ହିମାଳୟ
କଚ-ଦେବଯାନୀ-ଶର୍ମିଷ୍ଠା ରାୟ । ୧୪୦ ।

ଗଙ୍ଗା-ଯମୁନାର ହେଲା ସଙ୍ଗମ
ତୁଟି ଗଲା ମନୁ ଯେତେ ବିଭ୍ରମ
ରାଜାଙ୍କ ସେବାରେ ମଜ୍ଜିଲେ ଦୁହେଁ
ଦ୍ୱିପତ୍ର ମଧ୍ୟରେ ଫୁଲକି ଚାହେଁ
ସେପରି ଯଯାତି
ଆଶ୍ରମେ ଯାପିଲେ ଦିବସ ରାତି । ୧୪୧ ।

କାର୍ତ୍ତିକ ଶୁକ୍ଳ ସ[illegible] ତିଥିରେ
ନଭେମ୍ବର ବାର ( ୧୨ )ତେୟ୍ଶ ଅଶିରେ
କାବ୍ୟ ରଚନାରେ ବଳିଲା ମନ
ହୋଇଥିଲା ଶନିବାର ସେ ଦିନ
ଦିନ ନଅଟାରେ
ବାଣୀଙ୍କ କୃପାରୁ ଆରମ୍ଭ କରେ । ୧୪୨ ।

ପୌଷ ଏକ ଦିନ ଶନିବାରରେ
ଶୁକ୍ଳ ପକ୍ଷର ଦ୍ୱାଦଶୀ ତିଥିରେ
ଡ଼ିସେମ୍ବର ସତର ତାରିଖରେ
ସମାପନ ଷଟତ୍ରିଂଶ ଦିନରେ
ଦିନ ନଅଟାରେ
ବାଣୀଙ୍କ କୃପାରୁ ସମାପ୍ତ କରେ । ୧୪୩ ।







# ସୁଭାଷିତ ପଦ

*ଶ୍ରୀଯୁକ୍ତ କବିବର ପରିଡ଼ାଙ୍କ ଦ୍ୱାରା ସୁ-ନିର୍ବାଚିତ*

ସୌର୍ଯ୍ୟମାନଙ୍କର ଅସ୍ତ୍ରର ଝଙ୍କାର କାର୍ମୂକ ଟଙ୍କାର ଶୁଣି;
ପଡ଼ୋଶୀ ରାଜ୍ୟର ରାଜାମାନଙ୍କର ରକ୍ତ ହୋଇଯାଏ ପାଣି ।

ପୂର୍ବାଶା ସୁନ୍ଦରୀ ଭାଲେ ଯଥା କାବ୍ୟ ତାରା ବିରାଜେ,
ଚନ୍ଦ୍ର ଚୂଡ଼ ଶିରେ ଚନ୍ଦ୍ରିକା ଯେସନ ଶୋଭା ସରଜେ।

ଫଣୀ ଶିରେ ମଣିପରି ଭୟଙ୍କର ପୁଣି ସୁନ୍ଦର,
ଉଭୟ ଭାବର ହୋଇଥିଲା ତହିଁ ସୁଷମା ହାର।

କଚ ଫୁଲ ତୋଳେ ବୃକ୍ଷଶିଖ ବ୍ୟସ୍ତ ବଲ୍ଲରୀ ଧରି,
ଦେବଯାନୀ ତଳେ ଗୋଟାଏ ଯତନେ ଚାଙ୍ଗୁଡ଼ା ଭରି।

ଯେଉଁ ଯେଉଁ ପୁଷ୍ପେ ଦେବଯାନୀ କରେ ବେଶି ଆଦର,
ସେହି ସେହି ପୁଷ୍ପ ତୋଳି ଆଣେ କଚନୋହି କାତର।

ମାଳା ଗୁନ୍ଥି ଯତ୍ନେ ଦେବଯାନୀ ଦିଏ ଗଭାରେ ବାନ୍ଧି,
ସତେକି କନ୍ଦର୍ପ ଜାଲ ବିସ୍ତାରିଛି ଦେବାକୁ ଫାନ୍ଦି।

ଶଶୀ ମୁଖୀହସି ପଚାରେ କଚକୁ ଶୋଭା ଉପମା,
ସୁଷମାକୁ ସମା-ନହେବେ କେ ବାମା ନାହିଁ ଉପମା।





ଲୁଚି ବସିଥାଏ ଦେବଯାନୀ କରେ ସୁମନଧରି,
ଧ୍ୟାନ ଭଗ୍ନ ହେଲେ ପୁଷ୍ପାଞ୍ଜଳି ଦିଏ ଅର୍ଚ୍ଚନା କରି।

ମନେ ମନେ ତାର ସଜାଡ଼ି ଥାଏ ସେ କଳ୍ପନା ଶେଯ,
ଭବିଷ୍ୟତେ ଯହିଁ କଚ କର ଧରି ତେଜିବ ଲାଜ।

ମାତ୍ର କଚ ହୃଦେ ନ ଥାଏ ସେପରି ତିଳେ ଭାବନା,
ଭଗ୍ନୀରୂପେ ଦେବଯାନୀ ସାଥେ ତାଙ୍କ ନିତ୍ୟ ଖେଳନା।

ପ୍ରଥମେ ବିବେକ ମରେ ଯେତେବେଳେ ବିନାଶ ଗ୍ରାସେ,
ପରେ ପରେ ପ୍ରାଣୀ ନାଶ ହୁଏ ଜାଣି ଆପଣା ଦୋଷେ।

କାଳ ପରିହାସ ବୁଝିବାକୁ କାର ଅଛି ଶକତି ?
ମହାବଳୀଠାରୁ ବଳୀୟାନ କାଳ କରାଳ ଗତି।

ରାଜହଂସ ସମ ନିର୍ଲିପ୍ତ ସେ ପୂତ ତାଙ୍କ ଶରୀର,
ବାସନା ନୀରକୁ ବରଜି ଦିଅନ୍ତି ସେ ଯୋଗ କ୍ଷୀର।

ବୁଡ଼ିମଲା ଲୋକ କୁଟାଖିଅ ଆଶ୍ରା କରିବା ପରି,
ଦେବଯାନୀ ମନ ବସିଥାଏ ଚଢି ସାନ୍ତ୍ୱନା -ତରୀ।

ଲାଜନାହିଁ ତୋର ବାପ ଦରବାରେ ମାଗିଲେ ଭିକ,
ଭିକ୍ଷା କରି ତମେ ଚଳି ଆସୁଅଛ କାଳ କାଳକ।

ମୋ ବାପା ବସିବେ ରତ୍ନସିଂହାସନେ ତୋ ବାପା ତଳେ,
ରତ୍ନପଲଙ୍କରେ ପହୁଡ଼ିଲେ ମୁଁ -ତୁ ଶୋଇବୁ ତଳେ।

ରାଜପ୍ରାସାଦରେ ପ୍ରାଚୁର୍ଯ୍ୟ କୋଳରେ ମୋର ବିହାର,
ଅରଣ୍ୟ ମଧ୍ୟରେ କୁଡ଼ିଆ ଭିତରେ ତୋ କାରବାର।

ସମୟ ସ୍ରୋତରେ ଭାସି ଭାସି ଚାଲେ ଜୀବନ ତରୀ,
କେତେବେଳେ ଜାଉ -ଶାଗ ପୁଣି କେବେ ଖେଚୁଡ଼ୀ-କ୍ଷିରୀ।





ମନେ ହୁଏ ଯାହା ଭାଗ୍ୟଠାରୁ ବଡ଼ ଆଉ କେ ନାହିଁ,
ଦଇବ ଦଉଡ଼ି ଯେଣେ ଟାଣେ ସିଏ ତେଣିକି ଯାଇ।

ଅଦେଖା ହାତର କରାମତି କିଏ ପାରିବ କଳି,
ତାହାତ ମୁଠାରୁ ଖସି ଯିବା ପାଇଁ ଅଛି କେ ବଳୀ।

ପ୍ରେମର ସନ୍ତକ ପାଇଁ କି ପ୍ରେମିକ
ପ୍ରେମିକା ତ୍ୟାଗ ସ୍ୱୀକାର;
ଇତିହାସେ ସ୍ୱର୍ଣ୍ଣା- କ୍ଷରେ ଲେଖାରହେ
ଯାବତ ଚନ୍ଦ୍ର ଭାସ୍କର।

ସୁରାଠାରୁ ଆଉ କଦର୍ଯ୍ୟ ପାନୀୟ
ସଂସାରରେ କିଛି ନାହିଁ,
ସୁରା ଯୋଗୁଁ ମୃତ ସଞ୍ଜିବନୀ ମନ୍ତ୍ର
ପିତା ମୋ ଥିଲେ ହରାଇ।

ବାମନ କି ସତେ ପାଇଲା ଚାନ୍ଦ
ଚକ୍ଷୁ ପାଇଲା କି ଆଜନ୍ମ ଅନ୍ଧ
ମରୁ ଭୂମିରେ ଫୁଟିଲା କମଳ
ତୃଷାତୁର କଣ୍ଠେ ମଧୁର ଜଳ କି
ବିହି ଦେଲା ହୋଇ ତୋଷ;
ସେପରି ଆନନ୍ଦ -ଉଲ୍ଲାସେ ଉଚ୍ଛୁଳି ଉଠେ ଶର୍ମିଷ୍ଠା ମାନସ।

ବିହି ଯାହାକୁ କରିଛି ସୁନ୍ଦର
ବେଶ ବିନ୍ୟାସତା କିଦରକାର !
ଶର୍ମିଷ୍ଠା ପାଶେ ବା ଭୂଷଣ କାହିଁ
ତଥାପି କେ ତାକୁ ପାରିବ ଚାହିଁ
ସ୍ୱଭାବ ସୁଲଭ ଅଙ୍ଗ
ଶାଣିତ-ଶାୟକ ସତେକି ସେ ଏକ ସାଇତି ଅଛି ଅନଙ୍ଗ।





ନଦୀ-ନିର୍ଝରର ନିର୍ମଳ ଜଳ
ମାଳଭୂମି ପଥେ ହୋଇ ବିକଳ
ଆସୁ ଆସୁ ପ୍ରତିବନ୍ଧକ ପାଇ
ପ୍ରପାତ ରୂପେ ପଡ଼ିଅଛି ଢ଼େଇଁ
ଅତି ଚମତ୍କାର
ପ୍ରକୃତିର ସେହି ଶୋଭା ସମ୍ଭାର।

ନଭରଙ୍ଗ ମଞ୍ଚେ ରାଜୁତି ସାରି
ରବି-ଲଭି ଅସ୍ତ ଗିରି ଶିଖରୀ
ରଙ୍ଗ ପରଦା ଅନ୍ତରାଳେ ଲୁଚି
ଯିବାରୁ, ରଜନୀ ଫିଟାଇ କଞ୍ଚି
ଦେଇଛି କି ବୁଣି
ନଭେ ନକ୍ଷତ୍ର ମୋତି ନିଶା ମଣି।

ଜୀବନ ହିଁ ଆଶା, ଆଶା ଜୀବନ
ଆଶା ପଛେ କରି - ଅନୁଧାବନ
ଆଗକୁ ଆଶାତ - ପଛକୁ ଆଶା
ପୁର-ପରି ଆଶା - ପିଠାରେ ବସା,
ଆଶା ହିଁ ଶାସ୍ୱତ,
ଆଶାରେ ସୂର୍ଯ୍ୟ - ଚନ୍ଦ୍ର ଆତ ଯାତ।

ଅସ୍ତଗାମୀ ରବି - ଲୋହିତ କର,
ପଡ଼ିଥାଏ ନୀଳ-ଗିରି-ଶିଖର,
କଳ-କଳ ନିର୍ଝରିଣୀ ବିତାନ
ବିହଙ୍ଗ -କାକଳୀ କୁହୁ ନିସ୍ୱନ
ମୋହୁଥାଏ ମନ,
ବନ- ଦେବୀର କି କେଳି -ସଦନ।





ଯୌବନ ସହିତ ଧନ ସମ୍ପତ୍ତି
ଅଛି ପ୍ରଭୂତ୍ୱ କ୍ଷମତା ପ୍ରଭୃତି
ଅବିବେକି ତାର ଅଭାବ ଯାହା
ସୁରା ପାନରେ ପୂର୍ଣ୍ଣ ହେଲା ତାହା
ଘଟିଲା ଅନର୍ଥ
ଶାସ୍ତ୍ର ବଚନ କି ହୋଇବ ବ୍ୟର୍ଥ।

ଜାଣିଲି ଜୀବନେ ତ୍ୟାଗ ମହତ୍ତ୍ୱ
ଭୋଗେ ଜୀବନ ନୁହେଁ ଚରିତାର୍ଥ
ତ୍ୟାଗଠାରୁ ବଳି ତପସ୍ୟା ନାହିଁ
ତ୍ୟାଗୀ ହୋଇ ପାରେ ବିଶ୍ୱବିଜୟୀ
କରିବି ମୁଁ ତ୍ୟାଗ
ପୁରୁକୁ ତାହାର ଯୌବନ ଆଗ।







କବି : ଶ୍ରୀଯୁକ୍ତ ବ୍ୟୋମବିହାରୀ ରଥ

ଜନ୍ମ : ତା ୨୯। ୧୧। ୧୯୪୩

ଗ୍ରାମ : ଇଡୁକୁରା, ପୋ: ପୋଡ଼ାମରାଇ

ଭାୟା : ମାହାଙ୍ଗା, ଜି : କଟକ

ଅବସରପ୍ରାପ୍ତ ଶିକ୍ଷକ, ଶଙ୍ଖତ୍ରାସ ଉଚ୍ଚ ବିଦ୍ୟାଳୟ, କଟକ

କବିଙ୍କର ଅନ୍ୟ କୃତି - **କଳ୍ପନା କୁସୁମ**



**ପ୍ରକାଶକ : ମନୋଜ କୁମାର ନନ୍ଦ**

Rashmi Printers, B.T.-17, New Bus Stand, Rourkela-1, Ph.: 3294907, 6950128, M : 9937434134